# ସିଏ ରକ୍ତ ଦେଲେ
# ଆମରି ପାଇଁ

( ଅଜଣା ଶହୀଦଙ୍କର ଅପୂର୍ବ କାହାଣୀ )

ନାମ ________________________________

ଠିକଣା ________________________________

ପୁସ୍ତକ ପ୍ରାପ୍ତି ସ୍ଥାନ ଓ ଯୋଗାଯୋଗ :—

ସଂପାଦକ : ଶିଶୁ ରାଇଜ
ସା:/ପୋ: ଜୟପୁର ଜଳସେଚନ କଲୋନୀ
ଜି: କୋରାପୁଟ-୭୬୪୦୦୪

ମୂଲ୍ୟ—ଦୁଇଟଙ୍କା ପଚାଶ ପଇସା ମାତ୍ର

'ଶିଶୁରାଇଜ'ର ନୂଆ ବାର୍ଷିକ ଗ୍ରାହକଙ୍କୁ ଏହି ପୁସ୍ତକ ବିନା ମୂଲ୍ୟରେ ଦିଆଯାଏ । ଗ୍ରାହକ ଚାନ୍ଦା ୧୦ ଟଙ୍କା ।

# ଯିଏ ରକ୍ତ ଦେଲେ ଆମରି ପାଇଁ

ଲେଖକ :—
କୃତ୍ତିବାସ ନାୟକ,
ଗୀତିକାର ଆକାଶବାଣୀ

ପ୍ରକାଶକ :—
ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ,
ଭଦ୍ରକ

ମୁଦ୍ରଣ :—
ସ୍ୱାଧୀନ ପ୍ରେସ୍,
ବ୍ରହ୍ମପୁର-୧

ପ୍ରଥମ ପ୍ରକାଶ :—
ସ୍ୱାଧୀନତା ଦିବସ, ୧୯୮୪

## JIE RAKTA DELE AAMARI PAIN

*By* : **Mr. Kruttibas Nayak,**
Chief Editer : Shishu Raija
Approved Lyrist : All India Radio

*Published by* : **RICOL,**
Orissa, Bhadrok

*Printed at* : **Swadheen Press,**
Berhampur-1

*1st Edition* : **15th Aug' 1984**

*Price* : **Rs. 2·50**
( Rupees Two and Paise Fifty )

# ସୂଚୀପତ୍ର



# ଉତ୍ସର୍ଗ

ଯେଉଁମାନେ କେବଳ ଦେଇଗଲେ, ସ୍ୱାଧୀନତାର ସ୍ୱାଦ ଚୁଖିପାରିଲେ ନାହିଁ । ସେହି ମହାନ୍ ଆତ୍ମାଙ୍କର ଉଦ୍ଦେଶ୍ୟରେ ଏହି କ୍ଷୁଦ୍ର ସୃଷ୍ଟିକୁ ଉତ୍ସର୍ଗ କଲି ।

କୃତ୍ତିବାସ ନାୟକ

# ସୂଚନା

ଭଲ ପାଇବା ଜୀବର ଜନ୍ମଗତ ସ୍ୱଭାବ । କେତେକଙ୍କ ଭଲ ପାଇବା ସଙ୍କୀର୍ଣ୍ଣତା ମଧ୍ୟରେ ସୀମିତ । ଆଉ କେତେକ ଏହି ବିଶାଳ ସଂସାରକୁ ଭଲ ପାଇଥାନ୍ତି । କେବଳ ମଣିଷ ନୁହେଁ— ପଶୁପକ୍ଷୀ ଠାରୁ କୀଟପତଙ୍ଗ ପର୍ଯ୍ୟନ୍ତ ସମସ୍ତେ ନିଜକୁ ସବୁଠାରୁ ବେଶି ଭଲ ପାଇଥାଆନ୍ତି । ଯାହାର ଭଲ ପାଇବା ଯେତେ ସୁଦୂର ପ୍ରସାରି, ସେ ସେତେ ଉନ୍ନତ ପ୍ରାଣୀ ଭାବରେ ଗଣାଯାଏ ।

ମଣିଷ ନିଜର ବୁଦ୍ଧିବିବେକ ବଳରେ ଆଜି ସର୍ବଶ୍ରେଷ୍ଠ ପ୍ରାଣୀ ଭାବରେ ପରିଗଣିତ । ଆଦିମ ମଣିଷ ବଣ ଜଙ୍ଗଲରେ ବୁଲି ଶିକାର କରି ବଞ୍ଚୁଥିବା ସମୟରେ ନିଜକୁ ଭଲ ପାଇବା ସଙ୍ଗେ ସଙ୍ଗେ ହୁଏତ କେବଳ ନିଜ ପରିବାରକୁ ଭଲ ପାଉଥିଲା । ସେମାନଙ୍କ ପାଇଁ ପ୍ରାଣପଣେ ଲଢ଼ୁଥିଲା ।

ମଣିଷ ଯେତେବେଳେ ସମାଜ ଗଠନ କରି ଜାଣିଲା, ତା'ର ଜୀବନ ମାନଦଣ୍ଡର ଉନ୍ନତି ଘଟିବା ସଙ୍ଗେ ସଙ୍ଗେ ସେ ନିଜ ସମାଜ, ଗ୍ରାମ ଓ ଦେଶକୁ ଭଲ ପାଇ ଶିଖିଲା । ସେ ବୁଝିଗଲା—ଦେଶର ଉନ୍ନତି ଅର୍ଥ, ତାର ଉନ୍ନତି । ଦେଶରକ୍ଷା ହେଲେ ସେ ସୁରକ୍ଷିତ ରହିପାରିବ । ତା ପରେ ମଣିଷ ସଙ୍କୀର୍ଣ୍ଣତା ମଧ୍ୟରେ ରହିପାରିଲା ନାହିଁ । କେବଳ ପରିବାରକୁ ଭଲ ପାଇବା ସଙ୍ଗେ ସଙ୍ଗେ ନିଜ ଜାତିକୁ ଗୋଟିଏ ପରିବାର ମନେ କଲା ।

ସବୁ ଗଛର ଫଳ ମିଠା ନ ହେଲାପରି, ସମସ୍ତଙ୍କ ହୃଦୟରେ ଜାତିପ୍ରୀତି ଜାଗରଣ ନହେବା ସ୍ୱାଭାବିକ । ଯେଉଁ କେତେ ଜଣ ମହାମାନବ ନିଜ ପରିବାର ଅପେକ୍ଷା ଜାତି ଓ ଦେଶକୁ ଅଧିକ ଭଲ ପାଆନ୍ତି, ଦେଶ ପାଇଁ ଶ୍ରମ, ଧନ ଓ ଜୀବନ ଦାନ କରି ଶୂନ୍ୟ ହସ୍ତରେ ସଂସାରରୁ ଚାଲିଯାଆନ୍ତି ; ସେମାନେ ଜାତି

ନିକଟରେ ଶହୀଦ ହିସାବରେ ପରିଚିତ ହୁଅନ୍ତି । ଯୁଗ ଯୁଗ ଆଦର୍ଶ ହୋଇ ପୂଜା ପାଆନ୍ତି ।

ମହାନ୍ ଆମର ଏଇ ପୁଣ୍ୟ ଭୂମି ଭାରତବର୍ଷ । ନାନା ଜାତି, ଧର୍ମ ଓ ବର୍ଣ୍ଣର ଲୋକଙ୍କର ପ୍ରିୟ ଜନ୍ମଭୂମି ଏଇ ଦେଶ ।

ଯୁଗ ପରେ ଯୁଗ ବିତିଯାଏ । କେତେ ବିଦେଶୀ ଜାତି ଭାରତ ପ୍ରତି ବିଭିନ୍ନ ଦିଗରୁ ଆକର୍ଷିତ ହୋଇଛନ୍ତି । ଏ ଦେଶର ନରନାରୀଙ୍କ ସରଳତାର ସୁଯୋଗ ନେଇ ସେମାନେ ଯୁଗଯୁଗ ଧରି ଆମର ଶାସକ ହୋଇପାରିଛନ୍ତି । ସେମାନଙ୍କ ମଧ୍ୟରେ ଇଂରେଜ ବଣିକ ଜାତିର ଶାସନକାଳ—ଭାରତବର୍ଷର ନରନାରୀଙ୍କ ହୃଦୟରେ ଆଣିଦେଲା, ଅପୂର୍ବ ଶିହରଣ-ଜାଗରଣ । ଭାରତୀୟମାନେ ସ୍ୱାଧୀନତାର ସ୍ୱାଦ ଚାଖିବାକୁ ବ୍ୟାକୁଳତା ପ୍ରକାଶ କଲେ ।

ବିଶ୍ୱରେ ବିନା ରକ୍ତପାତରେ ସ୍ୱାଧୀନତା ଲାଭ କରିଥିବା ଏକମାତ୍ର ଦେଶ—ଭାରତବର୍ଷ । ଆମେ ସମସ୍ତେ ଜାଣୁ, ଆମର ଜନ୍ମଭୂମିକୁ ସ୍ୱାଧୀନ କରିବା ପାଇଁ—ଭାରତର ବଣ ପାହାଡ଼ର ଗୁହାରେ ବାସ କରୁଥିବା ଆଦିବାସୀମାନଙ୍କ ଠାରୁ ଆରମ୍ଭ କରି ରାଜା ମହାରଜାଙ୍କ ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ଜନତା ଏଇ ସ୍ୱାଧୀନତା ଯଜ୍ଞରେ ଝାସ ଦେଇଛନ୍ତି ।

ଯେଉଁ ବୀର ପୁରୁଷ ଓ ନାରୀ ସବୁକିଛି ତ୍ୟାଗ କରି ଶହୀଦ ହୋଇଛନ୍ତି—ସେମାନଙ୍କ ମଧ୍ୟରୁ ଆଙ୍ଗୁଳିରେ ଗଣିଲା ପରି ଅଳ୍ପ କେତେ ଜଣ ଶହୀଦ ଆଜି ଆମ ଆଖି ଆଗକୁ ଆସନ୍ତି ।

କହିବା ବାହୁଲ୍ୟ ଯେ, ଆଜି ଯେଉଁମାନେ ପ୍ରଥମ ଶ୍ରେଣୀର ଶହୀଦ ଭାବେ ଖ୍ୟାତି ଲାଭ କରିଛନ୍ତି, ସେମାନଙ୍କ ଠାରୁ ଅଧିକ ତ୍ୟାଗ-ନିଷ୍ଠା ପ୍ରଦର୍ଶନ କରିଥିବା ଶହୀଦମାନଙ୍କର ନାମ ଧୀରେ

ଧୀରେ ଲୁପ୍ତ ଯାଉଛନ୍ତି । ଏହିପରି ଭାବେ ଯଦି ଶହୀଦମାନଙ୍କ ପ୍ରତି ଅବହେଳା କରାଯାଏ—ଅଳ୍ପ କେତେ ବର୍ଷ ପରେ ଆମର ଭବିଷ୍ୟତ ବଂଶଧରମାନେ କେବଳ ମହାତ୍ମା ଗାନ୍ଧୀ, ସୁବାସ ବୋଷ, ଭଗତ ସିଂହଙ୍କ ପରି ଅଳ୍ପ କେତୋଟି ନାମ ମାତ୍ର ଶହୀଦ ତାଲିକାରେ ଦେଖିବେ ।

ଭାରତର ସ୍ୱାଧୀନତା ସମ୍ବନ୍ଧରେ ଆଲୋଚନା ସମୟରେ ଜଣେ ବିଖ୍ୟାତ ଶହୀଦଙ୍କ ନାମ ପାଖରେ ଯେଉଁ "ଇତ୍ୟାଦି" "ପ୍ରଭୃତି" ଶବ୍ଦଗୁଡ଼ିକ ରହିଯାଏ, ସେହି "ଇତ୍ୟାଦି-ପ୍ରଭୃତି"ଙ୍କ ମଧ୍ୟରୁ କେତେ ଜଣଙ୍କୁ ଆଲୋକକୁ ଆଣିବା ଏହି ପୁସ୍ତକଟିର ମୂଳ ଲକ୍ଷ୍ୟ ।

ଅଜର ଯୁଗ ପ୍ରଚାରଧର୍ମୀ । ଯେଉଁ ଜିନିଷର ଯେତେ ବହୁଳ ପ୍ରଚାର-ପ୍ରସାର ହୋଇପାରେ ; ତାହା ସେତେ ବଡ଼ ବା ଭଲ ଜିନିଷ ଭାବରେ ପରିଚିତ ହୁଏ ।

ଚଳଚ୍ଚିତ୍ର ମାଧ୍ୟମରେ ନବାଗତା ଦେବୀ ସନ୍ତୋଷୀମାତାଙ୍କ ମହିମା ପ୍ରଚାର ହୋଇଥିବାରୁ ସେ ଭାରତର ସବୁଠାରୁ ପ୍ରିୟ ଦେବୀ ହୋଇ ପାରିଛନ୍ତି । ଆଦିମ ଯୁଗରୁ ପୂଜା ପାଇ ଆସୁଥିବା ମୁଖ୍ୟ ଦେବତାଗଣ ଯଥା—ଶିବ, ବିଷ୍ଣୁ, ସୂର୍ଯ୍ୟ ଓ ଗଣେଶ ଆଜି ପଛରେ ପଡ଼ିଯିବା କିଛି ନୂଆ କଥା ନୁହେଁ ।

ଏହାର ଅର୍ଥ ନୁହେଁ ଯେ, ଯେଉଁ ଶହୀଦମାନଙ୍କର ଯଥେଷ୍ଟ ପ୍ରଚାର ହୋଇଛି—ତାର ଆବଶ୍ୟକତା ନଥିଲା । ଏହା ସଙ୍ଗେ ସଙ୍ଗେ "ଇତ୍ୟାଦି-ପ୍ରଭୃତି" ସମ୍ବୋଧନରେ ଲୁପ୍ତ ଅବସ୍ଥାରେ ରହି-ଯାଉଥିବା ଶହୀଦମାନଙ୍କର ଉପଯୁକ୍ତ ପୂଜ୍ୟପୂଜାର ଆବଶ୍ୟକତା ଅନୁଭୂତ ହୁଏ ।

୧୯୭୮ ମସିହାରେ ମୋର ନାଟକ "ପ୍ରଥମ ଶହୀଦ" ସଫଳତା ସହ ମଞ୍ଚସ୍ଥ ହେବା ପରେ ମୁଁ ଏହି ପୁସ୍ତକ ପ୍ରକାଶ ଓ ଲୁପ୍ତ ଶହୀଦମାନଙ୍କୁ ଆମର ଦାୟାଦମାନଙ୍କ ସମ୍ମୁଖରେ ଠିଆ କରାଇବାର ପରିକଳ୍ପନା କରିଥିଲି । ବିଶେଷଭାବେ ପ୍ରସିଦ୍ଧ ଓ ଖ୍ୟାତି ଲାଭ କରିଥିବା ଶହୀଦମାନଙ୍କ ବିଷୟରେ ଏଥିରେ କିଛି ପ୍ରକାଶ ପାଇ ନାହିଁ । କାରଣ ଏମାନଙ୍କ ବିଷୟରେ ଯଥେଷ୍ଟ ପୁସ୍ତକ ପ୍ରକାଶ ପାଇସାରିଛି । କଳେବର ବୃଦ୍ଧି ନ କରିବା ମନୋଭାବ ନେଇ ପୁସ୍ତକଟିକୁ ଯଥା ସମ୍ଭବ ସଂକ୍ଷିପ୍ତ କରିବାକୁ ବାଧ୍ୟ ହୋଇଛି । ଏଥିରେ ଆହୁରି ଅନେକ ଶହୀଦଙ୍କ ସମ୍ପର୍କରେ ଲେଖା ପ୍ରକାଶ କରାଯାଇ ପାରିଥାନ୍ତା । ଏକଥା ମୁଁ ମଧ୍ୟ ସ୍ୱୀକାର କରୁଛି ।

ଏଭଳି ଚେଷ୍ଟା ବୋଧହୁଏ, ଓଡ଼ିଶାରେ ପ୍ରଥମ । ଯଦି ପାଠକମାନଙ୍କର ଶୁଭେଚ୍ଛା ଓ ସହାନୁଭୂତି ମିଳେ, ତେବେ ଭବିଷ୍ୟତରେ ଏହି ପୁସ୍ତକର ଦ୍ୱିତୀୟ ଭାଗ ପ୍ରକାଶ କରିବାର ପ୍ରତିଶ୍ରୁତି ଦେଉଛି ।

ପୁସ୍ତକଟି ଐତିହାସିକ କାହାଣୀକୁ ନେଇ ସମୃଦ୍ଧ । ଆମର ଭବିଷ୍ୟତ ବଂଶଧରମାନେ ଏହାଦ୍ୱାରା ଯଦି ଉପକୃତ ହୁଅନ୍ତି, ଲେଖକ ନିଜକୁ ଧନ୍ୟ ମନେ କରିବ ।

— ଭାରତମାତା କି ଜୟ —

ଶିଶୁ ଦିବସ
୧୯୮୪

କୃତ୍ତିବାସ ନାୟକ

# ବୃଦ୍ଧ ଶହୀଦ କୁଅଁର ସିଂହ

୧୮୫୭ ସ୍ୱାଧୀନତା ଆନ୍ଦୋଳନ ସମୟର ଘଟଣା । ରାଷ୍ଟ୍ରଦଙ୍କଠାରେ ନିଜର ପ୍ରାଣକୁ ଅହୁତି ଦେବା ପାଇଁ ପ୍ରାୟ ସାତ ହଜାରରୁ ଅଧିକ ଦେଶଭକ୍ତ ପ୍ରସ୍ତୁତ ହୋଇଥାଆନ୍ତି । ସେମାନଙ୍କ ମଧ୍ୟରେ ଅଶୀବର୍ଷର ଜଣେ ବୃଦ୍ଧ କୁଅଁର ସିଂହ ଥାଆନ୍ତି । ବୟସଟା ସିନା ଗଡ଼ି ଯାଇଥିଲା, କିନ୍ତୁ କୁଅଁର ସିଂହଙ୍କର ମନୋବଳ ଓ ଯୁବକ ସୁଲଭତାରେ ତାଙ୍କ ସହ ଅନ୍ୟ କେହି ଯୁବକ ସମାନ ନଥିଲେ ।

ଜୁଲାଇ ୨୫ ତାରିଖ ବୟୋବୃଦ୍ଧ କୁଅଁର ସିଂହଙ୍କ ନେତୃତ୍ୱରେ ଏକ ଆନ୍ଦୋଳନକାରୀ ଦଳ ଦାନାପୁର ଇଂରେଜ ସୈନ୍ୟମାନଙ୍କର ସମ୍ମୁଖୀନ ହେଲେ । ଇଂରେଜ କମିଶନର ଟେଲର୍ ଏ ଖବର ପାଇ ଭାବିଲେ –୮୦ ବର୍ଷୀୟ ବୃଦ୍ଧ କୁଅଁର ସିଂହ ନିଜର ମୃତ୍ୟୁକୁ ଡାକି ଆଣୁଛନ୍ତି । ତଥାପି ସେ ମନେ ମନେ ତାଙ୍କୁ ଭୟ କରି ଏକ ଗୁପ୍ତ ଷଡ଼ଯନ୍ତ୍ରର ଯୋଜନା କଲେ । ଟେଲର୍ ସସମ୍ମାନେ କୁଅଁର ସିଂହଙ୍କୁ ପାଟଣା ନିମନ୍ତ୍ରଣ କରି ଡକାଇଲେ । କିନ୍ତୁ ଚତୁର କୁଅଁର ସିଂହ ଟେଲର୍‌ର ଚାଲ୍ ବୁଝିପାରି ଟେଲର୍ ପାଖକୁ ଖବର ଦେଲେ ଯେ, ସେ ଅସୁସ୍ଥ ଥିବାରୁ ବର୍ତ୍ତମାନ ପାଟଣା ଯିବାକୁ ଅକ୍ଷମ ।

ତା ପରେ ବହୁତଗୁଡ଼ାଏ ସୈନ୍ୟ ଆସି ସେଠାରେ ସମାବେଶ ହେଲେ । କୁଅଁର ସିଂହ ନିଜର କ୍ରାନ୍ତିକାରୀ ବନ୍ଧୁ-

ମାନଙ୍କ ସହ ଯୁଦ୍ଧଭୂମିକୁ କୁଦି ପଡ଼ିଲେ । ସେଦିନ ଥିଲା ଜୁଲାଇ ୨୯ ତାରିଖ । ଇଂରେଜ ସେନାଧ୍ୟକ୍ଷ ଡେନ୍‌ବାର ୨୭° ଜଣ ଇଂରେଜୀ ସୈନ୍ୟ ଓ ୨୦୦ ଅନ୍ୟ ପ୍ରକାର ସୈନ୍ୟଙ୍କୁ ଧରି ଶୋଣ୍ ନଦୀକୂଳରେ ପହଞ୍ଚିଲେ । କିନ୍ତୁ ସେଠାରେ କୌଣସି କ୍ରାନ୍ତିକାରୀ ଦଳକୁ ନଦେଖି ସେମାନେ ଭାବିଲେ, କ୍ରାନ୍ତିକାରୀମାନେ ଭୟ କରି ପଳାଇଛନ୍ତି । କିନ୍ତୁ କ୍ରାନ୍ତିକାରୀମାନେ ସେଠାରେ ଅତି ସତର୍କତା ସହ ଲୁଚି ରହିଥିଲେ । ହଠାତ୍ ସେମାନେ ଇଂରେଜ ସୈନ୍ୟଙ୍କୁ ଆକ୍ରମଣ କଲେ । ଫଳରେ ପ୍ରଥମେ ଇଂରେଜ ସେନାଧ୍ୟକ୍ଷ ଡେନ୍‌ବାର ମରିବାର ଦେଖି ଅନ୍ୟମାନେ ଜୀବନ ନେଇ ଧାଇଁବାରେ ଲାଗି ପଡ଼ିଲେ । କିନ୍ତୁ କୁଅଁର ସିଂହ ଛାଡ଼ିବା ଲୋକ ନୁହଁନ୍ତି, ସେ ଗୋଡ଼ାଇ ଗୋଡ଼ାଇ ଇଂରେଜ ସୈନ୍ୟଙ୍କୁ ନିପାତ କଲେ । ମାତ୍ର ୫୦ ଜଣ ସୈନିକ କୌଣସି ପ୍ରକାରେ ଯାଇ ଦାନାପୁରରେ ପହଞ୍ଚିଲେ ।

ଏହି ଦୁର୍ଦ୍ଦଶା ହେବା ପରେ ମେଜର ଅୟୁର୍ ଥୋଡ଼ାଏ ସୈନ୍ୟ ଧରି ଆସି ସେଠାରେ ପହଞ୍ଚିଲେ । କିନ୍ତୁ ଠିକ୍ ପୂର୍ବ ଥରର ଅବସ୍ଥା ହେଲା ।

ଏହାପରେ କୁଅଁର ସିଂହ ଇଂରେଜମାନଙ୍କ ସହ ମୁହାଁ-ମୁହିଁ ଯୁଦ୍ଧ ନ କରିବାକୁ ସ୍ଥିର କଲେ । ସେ ନିଜର ସାଥୀମାନଙ୍କ ସହ ବିହାର ଜଙ୍ଗଲରେ ଲୁଚି ରହି ସେଠାରେ ଆଜାମ୍‌ଗଡ଼ରେ ଚଣ୍ଡଗୋଳ ସୃଷ୍ଟି କରିବା ପାଇଁ ଯୋଜନା କଲେ । ୨୩ ମାର୍ଚ୍ଚରେ କ୍ରାନ୍ତିକାରୀଦଳ କୁଅଁର ସିଂହଙ୍କ ନେତୃତ୍ୱରେ ଆଜାମ୍‌ଗଡ଼ ଅଧିକାର କରିବାକୁ ସ୍ଥିର ହେଲା । କିନ୍ତୁ କେତେଜଣ ବିଶ୍ୱାସ-

ପାଇକ ଏ ଖବର ଇଂରେଜଙ୍କୁ ଦେଇଦେବାରୁ ଶହ ଶହ ସଂଖ୍ୟାରେ ଇଂରେଜ ସୈନ୍ୟ ପହଞ୍ଚି କୁଅଁର ସିଂହଙ୍କୁ ପରାସ୍ତ କରିଦେଲେ । ସ୍ୱାଧୀନତା ସଂଗ୍ରାମୀ ଦଳକୁ ପରାସ୍ତ କରିଥିବାରୁ ଇଂରେଜ-ମାନେ ଭାରି ଖୁସି ହୋଇ ତଥି ନଦୀକୂଳରେ ମଜାରେ ଆରାମ କରୁଥିଲେ । ହଠାତ୍ କୁଅଁର ସିଂହ ଉପସ୍ଥିତ ହୋଇ ତାଙ୍କୁ ଆକ୍ରମଣ କରିବାରୁ ଇଂରେଜ ସୈନ୍ୟ ଛିନ୍ନଛତ୍ର ହୋଇ ଏଣେ-ତେଣେ ପଳାଇଗଲେ ।

କର୍ଣ୍ଣେଲ ଡେମ୍ସ ସେହି ମାସ ୨୮ ତାରିଖରେ କୁଅଁର ସିଂହଙ୍କ ସମ୍ମୁଖୀନ ହେଲେ । ପୂର୍ବଥର ପରି କୁଅଁର ସିଂହଙ୍କ ଦ୍ୱାରା ଡେମ୍ସ ମଧ୍ୟ ଦୟନୀୟ ଅବସ୍ଥାରେ ପରାଜୟ ସ୍ୱୀକାର କଲେ । ତା ପରେ ଲର୍ଡ୍ କର ଓ ସେନାପତି ଡଗଲସ୍‌ଙ୍କୁ ହତ୍ୟା କରି କୁଅଁର ସିଂହ ଇଂରେଜମାନଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ । ଯୁଦ୍ଧ ପରେ ସେ ନଦୀ ପାର ହୋଇ ଯାଉଥିବା ସମୟରେ ଗୋଟିଏ ଶତ୍ରୁ ଗୁଳି ଆସି କୁଅଁର ସିଂହଙ୍କ ଡାହାଣ ହାତରେ ବାଜିଗଲା । ଆଶ୍ଚର୍ଯ୍ୟର କଥା । ଶତ୍ରୁ ଗୁଳି ହାତରେ ବାଜିଥିବାରୁ କାଳେ ସେହି କାରଣରୁ ମରିଯିବେ, ଶତ୍ରୁ ହାତରେ ମରିବାକୁ ଅପମାନ ମନେ କରି ସେ ତାଙ୍କର ହାତଟାକୁ ବାହୁଠାରୁ କାଟି ପକାଇଲେ । ସେଇଠି ଗଙ୍ଗାମାତାକୁ ତାହା ଅର୍ପଣ କରିଦେଲେ ।

ଏପ୍ରିଲ ମାସ ୨୨ ତାରିଖରେ ସେ ନିଜ ଘରେ ଆସି ପହଞ୍ଚିଲେ । ସେତେବେଳକୁ ତାଙ୍କର ସଙ୍ଗଠନ ତଥା ସ୍ୱାସ୍ଥ୍ୟ ବହୁତ ଦୁର୍ବଳ ହୋଇ ପଡ଼ିଥିଲା । ତଥାପି ତାଙ୍କର ସ୍ୱାଧୀନତା ସଂଗ୍ରାମୀ ଦଳ

ଇଂରେଜମାନଙ୍କ ସହ ବାରମ୍ବାର ଯୁଦ୍ଧରେ ବ୍ୟସ୍ତ ଥାଏ । ଶେଷରେ କୁଅଁର ସିଂହ ଇଂରେଜ ସେନାପତି ଗ୍ରେଣ୍ଡ୍‌କୁ ହତ୍ୟାକରି ବିଶେଷ ପ୍ରଶଂସା ଅର୍ଜନ କଲେ ।

କୁଅଁର ସିଂହ ତାଙ୍କ ଜୀବନକାଳ ମଧ୍ୟରେ ଇଂରେଜଙ୍କୁ ବହୁତ ହଇରାଣ କରାଇ ୧୮୫୯ ଏପ୍ରିଲ ମାସ ୨୬ ତାରିଖରେ ଦେହ ତ୍ୟାଗ କଲେ । ସେ ଆମ ଭାରତର ବୟୋବୃଦ୍ଧ ବୀର ଶ୍ରେଷ୍ଠ-ଦେଶଭକ୍ତ-ଶହୀଦ ଭାବରେ ପରିଚିତ ହୁଅନ୍ତି ।

ଜୟହିନ୍ଦ୍ !

— ::0:: —

# ଅଜଣା ନାରୀ ଶହୀଦ

୧୮୫୭ ମସିହା ନଭେମ୍ବର ମାସ ୧୬ ତାରିଖ । ଭାରତସାରା ବିଦ୍ରୋହର ଅଗ୍ନି ବଳୁଥାଏ । ଦେଶଭକ୍ତମାନେ ପ୍ରାଣପଣେ ସଂଗ୍ରାମରତ ଥାଆନ୍ତି । ଇଂରେଜ ସୈନ୍ୟଙ୍କ ଉପଦ୍ରବତା ଖୁବ୍ ବଢ଼ି ଯାଇଥାଏ । ଇଂରେଜ ସରକାରଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅବଧକୁ ଦେଶଭକ୍ତମାନେ କାବୁ କରି ନେଇଥାନ୍ତି । ଇଂରେଜ ସେନାଧ୍ୟକ୍ଷ କେମ୍ପବେଲଙ୍କ ନେତୃତ୍ୱରେ ଏକ ଅଭିଯାନ ଆରମ୍ଭ ହେଲା । ସିକନ୍ଦରବାଗଠାରେ ଘନଘନ ଗୁଳି ବୃଷ୍ଟି ହେଉଥାଏ । ଦେଶଭକ୍ତମାନେ ସେ ଗୁଳିକୁ ଖାତିର ନକରି ଅତି ଉତ୍ସାହ ସହିତ ତାର ମୁକାବିଲା କରୁଥାନ୍ତି । ଫଳରେ କୌଣସି ସୁଫଳ ମିଳୁ ନଥାଏ । ସିକନ୍ଦରବାଗର କାନ୍ଥର ଅନ୍ୟପଟେ ଦେଶଭକ୍ତମାନେ ଛାଉଣୀ ପକାଇଥିବା କଥା ଇଂରେଜ ସୈନ୍ୟ ଜାଣିପାରି, ସେ କାନ୍ଥକୁ ଭାଙ୍ଗିବା ପାଇଁ ଇଂରେଜ ସୈନ୍ୟମାନେ ଚେଷ୍ଟା କଲେ ।

ଭୟଙ୍କର ଯୁଦ୍ଧ ପରେ ଇଂରେଜମାନେ ସେ କାନ୍ଥରେ ଗୋଟିଏ ସୁଡ଼ଙ୍ଗ କରିଦେଲେ । କିନ୍ତୁ ସେ ସୁଡ଼ଙ୍ଗରେ ଗଳି ଅନ୍ୟ ପାଖକୁ ଯିବାକୁ କାହାର ସାହସ ପାଉ ନଥାଏ । ଗୁଳିବର୍ଷଣ ଟିକେ କମିଯିବାରୁ ଜଣେ ସିପାହୀ ସାହସର ସହିତ ସେ ସୁଡ଼ଙ୍ଗରେ ମୁଣ୍ଡ ଭର୍ତ୍ତି କରିବା ମାତ୍ରେ ଧାଇଁ କରି ଗୋଟାଏ ଗୁଳି ଆସି ସିପାହୀକୁ ମାଟିରେ ଶୁଆଇଦେଲା ।

ବହୁ ସମୟ ପର୍ଯ୍ୟନ୍ତ ଇଂରେଜ ସେନାଧ୍ୟକ୍ଷ କିଛି ଜାଣି ନପାରି, ଆଉ ଜଣେ ଦକ୍ଷ ଅଫିସରଙ୍କୁ ସୁଡ଼ଙ୍ଗରେ ପଶିବାକୁ କହିଲେ । ସାହସ ବାନ୍ଧି ଅଫିସର ଜଣକ ସୁଡ଼ଙ୍ଗରେ ପଶିବା ମାତ୍ରେ ପୁଣି ଧାଁଏ କରି ଆଉ ଗୋଟିଏ ଗୁଳି ଆସି ତାଙ୍କ ମୁଣ୍ଡରେ ବାଜିଲା । ଜଣକ ପରେ ଜଣେ ଏହିପରି ୯ ଜଣ ଇଂରେଜ ସିପାହୀ ଓ ୩ ଜଣ ଗୋରା ସାହେବ ମୃତ୍ୟୁର ଶିକାର ହେଲେ । ଯେଉଁମାନେ ବଞ୍ଚିଗଲେ, ସେମାନେ ଜୀବନ ବିକଳରେ ଏଣେତେଣେ ଯାଇ ଲୁଚିଲେ ।

ହଠାତ୍ ଗୋଟିଏ ବଡ଼ ଗହଳିଆ ଅଶ୍ୱତ୍ଥ ଗଛ ଉପରେ ଜଣେ ସିପାହୀର ଦୃଷ୍ଟି ପଡ଼ିଗଲା । ଗଛର ଡାଳଟା ହଲିଯାଇ ଗୁଳିଟାଏ ଖୁଲି ଆସୁଥିବାର ଦେଖି ସାବଧାନ ହେବା ସଙ୍ଗେ ସଙ୍ଗେ ସେ ସମସ୍ତଙ୍କୁ ଏ କଥା ଜଣାଇଦେଲା । ଅଳ୍ପ ସମୟ ମଧ୍ୟରେ ଶହ ଶହ ସିପାହୀ ଇଂରେଜ ସୈନ୍ୟ ସେହି ଗଛ ଉପରକୁ ଗୁଳି ବର୍ଷଣ କଲେ । କିଛି ସମୟ ପାଇଁ ଗଛ ଭିତରୁ ମଧ୍ୟ ଜବାବି ଗୁଳି ଆସୁଥିଲା । ପୁଣି ହଠାତ୍ ଗୁଳି ବନ୍ଦ ହୋଇଗଲା ।

ଅଳ୍ପ ସମୟ ପରେ ନାଲି କପଡ଼ାରେ ଗୁଡ଼ା ଯାଇଥିବା ଗୋଟିଏ ଶବ ଗଛରୁ ଖସି ପଡ଼ିଲା । ଇଂରେଜ ସୈନ୍ୟମାନେ ଶବ ନିକଟକୁ ଯାଇ ଦେଖିଲେ, ଶବଟି ଜଣେ ଝରଣାପୁ ନାରୀର । ଏହା ଦେଖି ତାଙ୍କର ବିଶ୍ୱାସ ହେଲା ନାହିଁ ଯେ, ଜଣେ ସାମାନ୍ୟ ନାରୀ ଏତେ ସୈନ୍ୟଙ୍କୁ ହତ୍ୟା କରିଛି ।

ବଡ଼ ଦୁଃଖର କଥା । ଏହି ମହୀୟସୀ ମହିଳାଙ୍କର ଫଟଚିତ୍ର ଆଜ ପର୍ଯ୍ୟନ୍ତ କେହି ପାଇପାରି ନାହାନ୍ତି । ଏବେ ଆଉ ସେ ଅଶ୍ୱତ୍ଥ ଗଛ ନାହିଁ । ଭାରତ ସରକାର ୧୯୭୩ ମସିହାରେ ସେହି ଅଶ୍ୱତ୍ଥ ଗଛ ଥିବା ସ୍ଥାନରେ ଏକ ସୁନ୍ଦର ବୀରାଙ୍ଗନାଙ୍କ ମୂର୍ତ୍ତି ନିର୍ମାଣ କରି ଶିଳା ଉପରେ "ଅଜଣା ନାରୀ ଶହୀଦ" ଲେଖି ଦେଇଛନ୍ତି । ସେ ସ୍ଥାନଟି ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଏକ ପବିତ୍ର ପୀଠ ହୋଇ ରହିଛି ।

ଜୟହିନ୍ଦ !

—୧୦୪—

# ଶିଶୁ ଶହୀଦ ଶାଳିଗ୍ରାମ

୧୯୩୦ ମସିହା ଡିସେମ୍ବର ମାସ ୧ ତାରିଖର କଥା । ସ୍ୱାଧୀନ ସଂଗ୍ରାମୀ ଦଳ "ହିନ୍ଦୁସ୍ଥାନ ରିପବ୍ଲିକନ ଆର୍ମି"ର ଗୋଟିଏ ଗୁପ୍ତ ଦଳ କାନପୁରରେ ଥାଆନ୍ତି । "ଲାହୋର ଷଡ଼ଯନ୍ତ୍ର" କାରଣରୁ ସ୍ୱାଧୀନସଂଗ୍ରାମୀ ଦଳର ବହୁ ସଭ୍ୟ ଗିରଫ ହୋଇଥାନ୍ତି । ସେଥି କାରଣରୁ ଦଳଟି ଖୁବ ଦୁର୍ବଳ ହୋଇ ପଡ଼ିଥାଏ । ଦଳର କମାଣ୍ଡର ଚନ୍ଦ୍ରଶେଖର ଆଜାଦ୍ ବିଭିନ୍ନ ବିଦ୍ୟାଳୟ ଛାତ୍ରଙ୍କୁ ନିଜ ଦଳରେ ଭର୍ତ୍ତି କରାଇଥାନ୍ତି । କାନପୁର D. A. V. କଲେଜ ସାମନାରେ ଥିବା ଅସ୍ତ୍ର ଭଣ୍ଡାରକୁ ଲୁଟ୍‌ମାର କରିବା ପାଇଁ ଏକ ଗୋପନ ଯୋଜନା କରାଯାଇଥାଏ । ସେଥି ଅସ୍ତ୍ରଭଣ୍ଡାରକୁ କଡ଼ା ପୁଲିସ ପ୍ରହରୀ ଦିଆଯାଉଥାଏ ।

ଏହି ଯୋଜନାର ଦାୟିତ୍ୱ ନେଇଥିଲେ D. A. V. ସ୍କୁଲର ୧୧ ବର୍ଷର ଛାତ୍ର ଶାଳିଗ୍ରାମ । ଶାଳିଗ୍ରାମ ଦେଶ ମାତୃକାର ସେବାରେ ନିଜକୁ ବିସର୍ଜନ କରିବା ପାଇଁ ପ୍ରତି ମୁହୂର୍ତ୍ତରେ ପ୍ରସ୍ତୁତ ଥିଲେ । ପରେ ସେ କ୍ରାନ୍ତିକାରୀ ଦଳରେ ଯୋଗ ଦେଇ ଭଗତ ସିଂହ, ସୁରେନ୍ଦ୍ର ପାଣ୍ଡେ ଓ ଚନ୍ଦ୍ରଶେଖର ଆଜାଦ୍‌ଙ୍କ ପରି ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଆସିଲେ । ହାଇସ୍କୁଲ ପଢ଼ା ଶେଷରେ ସେ ପିସ୍ତଲ ଚଳାଇବା ଶିଖିଗଲେ । କାନପୁରର ଖ୍ରୀଷ୍ଟ କଲେଜ ଥିଲା, ଇଂରେଜ ସଭ୍ୟତାର ପ୍ରତୀକ । କଲେଜ ଉପରେ ଇଂରେଜ ପତାକା ସବୁବେଳେ ଉଡ଼ୁଥାଏ । ଦିନେ ଶାଳିଗ୍ରାମ ସେ ପତାକାକୁ ଖସାଇଦେଇ ତ୍ରିରଙ୍ଗା ପତାକାଟିକୁ ଲଗାଇଦେଲେ । ସେହି ସମୟରେ ଇଂରେଜ ପୁଲିସ ଆସି ଶାଳିଗ୍ରାମକୁ କଲେଜ ଛାତ ଉପରୁ ତଳକୁ ପେଲିଦେଲେ । ସୁଖର କଥା, ଶାଳିଗ୍ରାମ ଏଥିରେ

ଉଚରୁ ତଳକୁ ପଡିଲେ ସୁଦ୍ଧା ସାଥୀମାନଙ୍କ ସହାୟତାରେ ସେ ବଞ୍ଚିଗଲେ ।

ଏହି ଘଟଣା ପରଠାରୁ ପୋଲିସମାନେ ଶାଳଗ୍ରାମଙ୍କୁ ଭଲଭାବେ ଚିହ୍ନିଗଲେ ଏବଂ ତାର ପିଛରେ ଲାଗି ରହିଲେ । ଦିନେ ହୋଷ୍ଟେଲ ଭବନ ନିକଟରେ ଶମ୍ଭୂନାଥ ନାମକ ଜଣେ C. I. D. ଇନ୍ସପେକ୍ଟର ଶାଳଗ୍ରାମର ହାତକୁ ଧରି ପକାଇଲେ । ଶାଳଗ୍ରାମ ଠିକ୍ ବୁଝିଗଲେ ଯେ, ତାଙ୍କର ଯୋଜନାର ଭେଦ ଇଂରେଜମାନେ ଜାଣିପାରିଛନ୍ତି । ତେଣୁ ସେ ହଠାତ୍ ନିଜର ହାତକୁ ଛଡ଼ାଇ ନେଇ ଶମ୍ଭୂନାଥଙ୍କ ଉପରକୁ ଗୁଳି ଚଳାଇଲେ । ଶାଳଗ୍ରାମଙ୍କୁ ଗିରଫ କରାଗଲା । ସେ ଚିତ୍କାର କରି କହିଲେ ସଙ୍କେତ ଦ୍ୱାରା ତାଙ୍କର ସାଥୀମାନଙ୍କୁ ସାବଧାନ କରି ଦେଉଥାନ୍ତି । ଅଳ୍ପ ସମୟ ମଧ୍ୟରେ ଶହ ଶହ ପୁଲିସ ଶାଳଗ୍ରାମଙ୍କୁ ଘେରିଗଲେ, କିନ୍ତୁ କେହି ଯେ ଯୋଜନାର ଭେଦ ପାଇଲେ ନାହିଁ ।

ବର୍ଷକ ପରେ ଶାଳଗ୍ରାମଙ୍କୁ ଫାଶୀଦଣ୍ଡ ମିଳିଲା । ତାଙ୍କର ଫାଶୀ ଫଳରେ ସ୍ୱାଧୀନ ସଂଗ୍ରାମୀଦଳ ପ୍ରବଳଭାବେ ସତେଜ ହୋଇ ଉଠିଲେ । ଇଂରେଜ ସରକାର ଭାବିଥିଲେ, ଜଣେ ଯୁବକୁ ଫାଶୀ ଦେଲେ ସବୁ ଯୁବ ବନ୍ଧୁକ ଖେଳର ଫଳ କ'ଣ ଜାଣି-ଯିବେ; କିନ୍ତୁ ଫଳ ହେଲା ଓଲଟା । ଶାଳଗ୍ରାମ ଶୁକ୍ଲାଙ୍କ ଫାଶୀ ପରେ ସ୍ୱାଧୀନ ସଂଗ୍ରାମରେ ଯୁବଙ୍କ ସଂଖ୍ୟା ବଢ଼ିଗଲା । ହତ୍ୟାକାଣ୍ଡର ସଂଖ୍ୟା ବଢ଼ିଚାଲିଲା । ସଗ୍ରାମ ତୀବ୍ରତର ହେଲା । ଶାଳଗ୍ରାମ ଶିଶୁ ଶହୀଦଭାବେ ପୂଜା ପାଇଲେ ।

ଜୟହିନ୍ଦ୍ !

—୪୦୪—

ଦାମୋଦର ଓ ବାଳକୃଷ୍ଣଙ୍କ ସହ ତାଙ୍କର ଜଣେ ସାଥୀ ମଧ୍ୟ ଗିରଫ ହେଲେ । ଦୁଃଖର କଥା କୌଣସି ଲୋଭର ବଶବର୍ତ୍ତୀ ହୋଇ ତୃଷ୍ଣାପୂ ବନ୍ଧୁ ଜଣଙ୍କ ସରକାରୀ ସାକ୍ଷୀ ହୋଇ ନର୍ଦ୍ଦୋଷରେ ଖଲାସ ହେବାକୁ ରାଜି ହୋଇଗଲେ ।

ଦାମୋଦର ଓ ବାଳକୃଷ୍ଣଙ୍କ ଆଉ ଜଣେ ଦଶ ବର୍ଷର ଭାଇ ଦେବବ୍ରତ ଚାପେକର ଥିଲେ । ସେ ଯେତେବେଳେ ଦେଶ-ଦ୍ରୋହୀ ବିଶ୍ୱାସଘାତକତାର ଖବର ପାଇଲେ, ସେ ପ୍ରତିହିଂସାରେ ପାଗଳ ହୋଇଗଲେ । ତା ବିଶ୍ୱାସଘାତକକୁ ଉଚିତ୍ ଦଣ୍ଡ ଦେବା ପାଇଁ ଜୀବନ ଶପଥ ନେଲେ । ତା' ପରେ ପ୍ରତ୍ୟେକ ମୁହୂର୍ତ୍ତରେ ସେ ପ୍ରତିଶୋଧ ନେବାର ସୁଯୋଗ ଖୋଜି ବୁଲିଲେ ।

ଦିନେ ସେ ଆସି ତାଙ୍କ ମାଆଙ୍କ ପାଦତଳେ ପ୍ରଣାମ କରି କହିଲେ—"ମାଆ, ତୁମର କୋଳରୁ ଦୁଇଟି ଫୁଲ ଭାରତମାତାର ଚରଣରେ ଅର୍ପିତ ହୋଇ ସାରିଛନ୍ତି । ମୋତେ ଆଶୀର୍ବାଦ କର । ମୁଁ ମଧ୍ୟ ଭାରତମାତାର ସେବାରେ ଲାଗି, ଫୁଲ ବଗିଚାରୁ କଣ୍ଟାଆଳି ଗଛଟିକୁ ଉପାଡ଼ି ଦିଏ ।"

ଦେବବ୍ରତର ମାଆ ପୁଅର ଏପରି କଥା ଶୁଣି କାଠ ପାଲଟି ଯାଇଥିଲେ । ତାଙ୍କ ଆଖିରୁ କେବଳ ଝର ଝର ଲୁହ ବହି ଯାଉଥିଲା । ପୁଅର ମୁଣ୍ଡରେ ହାତ ବୁଲାଇ ମୁହଁରେ ଚୁମାଟିଏ ଦେଲେ । ଏହିପରି ଅନୁମତି ମାଆଙ୍କ ଠାରୁ ପାଇ ଦେବବ୍ରତ ଦେଶଦ୍ରୋହୀର ଅନୁସନ୍ଧାନ କଲେ ।

ଅଦାଲତରେ ଶୁଣାଣି ଚାଲିଥାଏ । ଘର ଲୋକ ଭିଡ଼ ହୋଇଥାଏ । ଦେବବ୍ରତଙ୍କର ଦମାଦମ୍ ୩ଟି ଗୁଳି ଗର୍ଜିଉଠି ସମସ୍ତ ସରକାରୀ ସାକ୍ଷୀଙ୍କ ରକ୍ତ ପିଇଗଲେ ।

ବର୍ଷର ପରେ ଦେବବ୍ରତ ସହ ତାର ଦୁଇଭାଇଙ୍କୁ ମଧ୍ୟ ଫାଶୀ ଦଣ୍ଡ ମିଳିଲା । ଭାରତମାତାର ଜୟଧ୍ୱନି ଦେଇ ତିନିଭାଇ ଫାଶୀଖୁଣ୍ଟରେ ଝୁଲି ପଡ଼ିଲେ । ଏହିପରି ତିନିଭାଇ ଶହୀଦମାନେ ଭାରତମାତାର ଗୌରବ ବୃଦ୍ଧି କଲେ ।

ଜୟହିନ୍ଦ୍ !

—:o:—

# ତିନିଭାଇ ଶହୀଦ

୧୮୬୭ ମସିହାରେ ପୁନା ଅଞ୍ଚଳରେ ଗଣେଶ ପୂଜା ଓ ଶିବାଜୀ ଜୟନ୍ତୀ, ଧୁମ୍‌ଧାମ୍‌ରେ ପାଳନ କରାଯାଉଥାଏ । ପୁନାର ଇଂରେଜ କମିଶନର ରେଣ୍ଡ୍‌ଙ୍କ ନେତୃତ୍ୱରେ ଇଂରେଜମାନେ ଅଯଥାରେ ପୁନା ଅଧିବାସୀଙ୍କ ଉପରେ ମନଇଚ୍ଛା ଅତ୍ୟାଚାର କରିଗଲେ । କମିଶନର ରେଣ୍ଡ୍ ଏଥିପାଇଁ ପୂରାପୂରି ଦାୟୀ ଥିଲେ । ଲୋକମାନ୍ୟ ବାଳଗଙ୍ଗାଧର ତିଳକ ତାଙ୍କ ସମ୍ବାଦପତ୍ର 'କେଶରୀ'ରେ ଇଂରେଜମାନଙ୍କର ଏପରି ଅମାନୁଷିକ ଅତ୍ୟାଚାରର ତୀବ୍ର ନିନ୍ଦା କରିଥିଲେ । ଏହାର ପ୍ରତିଶୋଧ ନେବା ପାଇଁ କେତେ ଜଣ ଦେଶପ୍ରେମୀ ପ୍ରତିଜ୍ଞାବଦ୍ଧ ହୋଇ ସୁଯୋଗର ଅପେକ୍ଷାରେ ଥାନ୍ତି ।

ଜୁନ୍ ମାସରେ ମହାରାଣୀ ଭିକ୍ଟୋରିଆଙ୍କର ସିଂହାସନ ଆରୋହଣର ଷାଠିଏ ବର୍ଷ ପୂର୍ତ୍ତି ଉତ୍ସବ ଇଂରେଜମାନେ ପାଳନ କରୁଥାନ୍ତି । ଉତ୍ସବ ଶେଷରେ ମିଷ୍ଟର ରେଣ୍ଡ୍ ଗଭର୍ଣ୍ଣମେଣ୍ଟ ହାଉସ୍‌ରୁ ତାଙ୍କ ବନ୍ଧୁ ଲେଫ୍‌ଟେନେଣ୍ଟ୍ ଆର୍ୟ୍ୟୁଷ୍ଟ ସହିତ ଫେରୁଥାନ୍ତି । ହଠାତ୍ ଗୋଟାଏ ଗୁଳି ଆସି ଲୋକଶତ୍ରୁ ରେଣ୍ଡ୍‌କୁ ଧରାଶାୟୀ କରିଦେଲା । ଆର୍ୟ୍ୟୁଷ୍ଟ ଜୀବନନେଇ ଦୌଡ଼ି ପଳାଇ ଯାଉଥିବା ସମୟରେ ୨ୟ ଗୁଳିଟି ତାର ପ୍ରାଣ ନେଇଗଲା । ଦାମୋଦର ଚାପେକରଙ୍କ ଗୁଳିରେ ରେଣ୍ଡ୍ ଓ ବାଳକୃଷ୍ଣ ଚାପେକରଙ୍କ ଗୁଳିରେ ଆର୍ୟ୍ୟୁଷ୍ଟର ପ୍ରାଣ ନାଶ ହେଲା ।

# ଦୃଢ଼ମନା ହେମୁ

ସେଦିନ ଥିଲା ନିର୍ମଳ ଆକାଶ । ପୂନେଇ ଜହ୍ନ ଆକାଶରେ ଖିଲି ଖିଲି ହସୁଥିଲା । ଭାରତ ସ୍ୱାଧୀନତାର ସୂର୍ଯ୍ୟ ଉଇଁ ଆସୁଥିଲା । ୧୯୪୨ ମସିହା ଅକ୍ଟୋବର ମାସର ୨୩ ତାରିଖ । ଗାନ୍ଧିଜୀଙ୍କର 'କର ବା ମର' ଆହ୍ୱାନରେ ଏକ ଅପୂର୍ବ ବାତାବରଣ ସୃଷ୍ଟି ହୋଇଥାଏ । ଚାରିଆଡ଼େ ପୁଲିସ ଓ ସୈନ୍ୟଙ୍କର ଗୁଞ୍ଜଣୀ । ସୈନ୍ୟ ସମାବେଶ ପ୍ରବଳଭାବେ ଲାଗିଥାଏ । ହଜାର ହଜାର ଇଂରେଜ ସୈନ୍ୟ ଭର୍ତ୍ତି ରେଳ ଆସୁଥିବାର ସମ୍ବାଦ ପାଇ ୩ ଜଣ ଯୁବକ ହାତୁଡ଼ି ଓ ରେଳ ଲାଇନ୍ ଖୋଲିବା ଯନ୍ତ୍ର ଧରି ସାହସର ସହିତ ବାହାରି ପଡ଼ିଲେ । ତାଙ୍କର ନେତା ଥିଲେ 'ହେମୁ' । ଜହ୍ନରାତି – ଚାରିଆଡ଼େ ଶୁନଶାନ । ଖୁବ ଶୀଘ୍ର କାମ ଶେଷ କରିବାକୁ ହେବ ନଚେତ୍ ରେଳ ସମସ୍ତ ହୋଇଯିବ ।

ହେମୁଙ୍କ ସାଥୀଦ୍ୱୟ ଠିକଣା ସ୍ଥାନରେ ପହଞ୍ଚି ରେଳ ଲାଇନ୍ ଖୋଲିବାରେ ଲାଗି ପଡ଼ିଲେ । ଧମ୍‌ଧାମ୍ ହାତୁଡ଼ି ପାହାର ଶବ୍ଦରେ ସେ ଅଞ୍ଚଳଟା କମ୍ପି ଉଠିଲା । ହେମୁ ସାବଧାନତା ସହିତ ଚାରିଆଡ଼କୁ ଦୃଷ୍ଟି ଦେଇ ଲାଇନ୍ ଖୋଲିବାକୁ ନିର୍ଦ୍ଦେଶ ଦେଉଥାଆନ୍ତି । ପୁଲିସ ଗୁଞ୍ଜଣୀ ମଧ୍ୟ ବେଶି ଦୂର ନଥିଲା । ହାତୁଡ଼ି ଶବ୍ଦ ଶୁଣି ଗୁଳିଭରା ବନ୍ଧୁକ ଧରି ୧୦ / ୧୫ ଜଣ ପୁଲିସ ଧାଇଁ ଆସିଲେ । ତତ୍‌କ୍ଷଣାତ୍ ହେମୁ ତାର ବନ୍ଧୁଙ୍କ ହାତରୁ ହାତୁଡ଼ି ଛଡ଼ାଇ ନେଇ ସେମାନଙ୍କୁ ଧାଇଁ ପଳାଇବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ବନ୍ଧୁମାନେ ହେମୁଙ୍କୁ ଏକା ଛାଡ଼ି ଚାଲିଯିବାକୁ ମନା କଲେ । ହେମୁ ତାଙ୍କୁ ବୁଝାଇଦେଲେ, "ଦେଖ ଏକସଙ୍ଗେ ଆମେ ୩ ଜଣ

ଧାଇଁଲେ ସଶସ୍ତ୍ର ପୁଲିସ ଆମକୁ ନିଶ୍ଚୟ ଧରିନେବେ । ଏକସଙ୍ଗେ ୩ ଜଣ ମରିବା ଅପେକ୍ଷା ମୁଁ ଏକା ଏଠାରେ ରହିଲେ, ପୁଲିସ ମୋତେହିଁ ଘେରି ରହିଯିବେ । ତୁମ ପ୍ରତି ଦୃଷ୍ଟି ତାଙ୍କ ପଡ଼ିବ ନାହିଁ । ସେଇଆ ହେଲା । ହେମୁ ଲାଇନ୍ ଖୋଲୁଥିବା ଅବସ୍ଥାରେ ଗିରଫ ହେଲେ । ଜେଲରେ ତାଙ୍କୁ ବହୁତ ନିର୍ଯ୍ୟାତନା ସହିବାକୁ ପଡ଼ିଲା । କଠିନ ଦଣ୍ଡ ମଧ୍ୟ ପାଇଲେ, ତଥାପି ସେ ଅନ୍ୟ କାହାରି ନାମ ପ୍ରକାଶ କଲେ ନାହିଁ ।

ବିଚାର ପରେ ତାଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା । ହେମୁର ମାଆ ଜେଲରେ ତାଙ୍କୁ ଦେଖାକରି କାନ୍ଦିଲେ । ଏହା ଦେଖି ହେମୁ ହସି ହସି କହିଲେ—"ମାଆ ତୁମେ କାନ୍ଦନା, ମୋତେ ଆଶୀର୍ବାଦ କର, ମୁଁ ଜନ୍ମ ଜନ୍ମେ ମାତୃଭୂମିର ସେବାରେ ଉତ୍ସର୍ଗ ହେଉଥାଏ ।"

୧୯୪୩ ମସିହା ଫେବୃୟାରୀ ୨୧ ତାରିଖରେ ହେମୁଙ୍କୁ ଫାଶୀ ଦିଆଗଲା । ତାଙ୍କୁ ସେଠାରେ ଶେଷ ଇଚ୍ଛା କ'ଣ ପଚାରି-ଯିବାରୁ, ସେ ଜେଲ ଅଧିକ୍ଷଙ୍କୁ କହିଲେ—"ମୁଁ ଇନ୍‌କିଲାବ୍—ଜିନ୍ଦାବାଦ୍ ଧ୍ୱନି ଦେବି । ଆପଣ ସେଥିକି ଦୋହରାଇ ଦିଅନ୍ତୁ । ଏତିକି ମୋର ଶେଷ ଇଚ୍ଛା ।" ମଜା କଥା—ସତରେ ସେଇଆ ହେଲା । ଜେଲ୍ ଅଧିକ୍ଷ—"ଇନ୍‌କିଲାବ୍ - ଜିନ୍ଦାବାଦ୍" ଧ୍ୱନି ଦେଲେ ।

ହେମୁ ଫାଶୀକାଠରେ ଝୁଲିପଡ଼ି ଆମର ଶହୀଦ ସଂଖ୍ୟା ବଢ଼ାଇ ଅମର ହେଲେ ।

ଜୟହିନ୍ଦ୍ !

# ବଠଣ ଶହୀଦ ରାଜଗୁରୁ

ସାଇମନ୍ କମିଶନ ବିରୋଧୀଙ୍କର ନେତୃତ୍ୱ ନେଇଥିବା କାରଣରୁ ପୁଲିସ ଲାଲା ଲଜପତ୍ ରାୟଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଥିଲେ, ଶେଷରେ ପୁଲିସଙ୍କ ଲାଠି ମାଡରେ ତାଙ୍କର ମୃତ୍ୟୁ ହୋଇଗଲା । ଏହାର ପ୍ରତିଶୋଧ ନେବା ପାଇଁ କ୍ରାନ୍ତିକାରୀ ଦଳରେ ସ୍ଥିର ହେଲା ଯେ, ଲାଲାଜୀଙ୍କ ମୃତ୍ୟୁର ମୁଖ୍ୟ ଅପରାଧୀ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ଫୋର୍ଟକୁ ହତ୍ୟା କରାଯିବ । ଏହା ସହିତ ମୁଖ୍ୟ ଅପରାଧୀ ତାଲିକାରେ ଆଉ ଜଣଙ୍କ ନାମ ଯୋଡ଼ିଥିଲେ ରାଜଗୁରୁ । ସେ ଜଣକ ହେଲେ ପୁଲିସ ଅଫିସର ସାଣ୍ଡର୍ସ । କ୍ରାନ୍ତିକାରୀ ଦଳର ମୁଖ୍ୟ ଚନ୍ଦ୍ରଶେଖର ଆଜାଦ ମିଷ୍ଟର ଫୋର୍ଟର ଗତିବିଧି ଲକ୍ଷ୍ୟ ରଖିବାକୁ ଆଦେଶ ଦେଇଥିଲେ । ସେ କେତେବେଳେ କେଉଁଆଡେ ଯିବା ଆସିବା କରୁଛି, ତାର ବିବରଣୀ ସଂଗ୍ରହ କରିବାକୁ ବେଶିଦିନ ଲାଗିଯିବାରୁ ଦିନେ ରାଜଗୁରୁ ଚନ୍ଦ୍ରଶେଖରଙ୍କ ପାଖରେ ପହଞ୍ଚି କହିଲେ— "ସମସ୍ତ ଗୁଡ଼ା ବେକାର କାହିଁକି ନଷ୍ଟ କରୁଛନ୍ତି ? ମୋତେ ଆଦେଶ ଦିଅନ୍ତୁ, ମୁଁ ଫୋର୍ଟଘରେ ପଶି ତାକୁ ହତ୍ୟା କରି ଆସିବି ।"

ଚନ୍ଦ୍ରଶେଖର ଆଜାଦ୍ ଯାହା କହୁଥିଲେ ବୁଝି ବିଚାରି ଧୀରସ୍ଥିର ଭାବେ କରୁଥିଲେ । ତାଙ୍କୁ ଏପରି ତରବରିଆ କାମ

ମୋତେ ଭଲ ଲାଗେ ନାହିଁ । ସେ ରାଜଗୁରୁଙ୍କୁ ଚାଲିଦେଇ କହିଲେ "ତୁମେ ଏପରି ବ୍ୟସ୍ତ ହେଲେ ଦଳରୁ ବାହାରି ଘରକୁ ଚାଲିଯାଅ ।"

ସମସ୍ତ ତଥ୍ୟ ସଂଗ୍ରହ ପରେ ଫୋର୍ଟର ହତ୍ୟା ଯୋଜନା ଠିକ୍ କରାଗଲା । ରାଜଗୁରୁଙ୍କର ଏକ ଜିଦ୍ ସେ ହିଁ ଫୋର୍ଟକୁ ହତ୍ୟା କରିବେ, କ୍ରାନ୍ତିକାରୀ ଦଳରେ ରାଜଗୁରୁଙ୍କ ଉପରେ କାହାରି ଭରସା ନଥିଲା । କେବଳ ତାଙ୍କର ଜିଦ୍ ସାହସ ଓ ଦେଶଭକ୍ତି ଦେଖି ତାଙ୍କୁ ଫୋର୍ଟର ଦ୍ୱାର ପାଖରେ ସର୍ବପ୍ରଥମେ ରଖାଗଲା । ତା ପରେ ଭଗତସିଂହ ଓ ପରେ ପରେ ଅନ୍ୟ ସାଥୀମାନେ ଗୁଳିଭରା ବନ୍ଧୁକ ଧରି ପ୍ରସ୍ତୁତ ହୋଇ ରହିଲେ । ଯଦି ରାଜଗୁରୁଙ୍କ ଲକ୍ଷ୍ୟ ବ୍ୟର୍ଥ ହୁଏ, ତା ହେଲେ ଭଗତ ସିଂହ ଗୁଳି ଚଳାଇବେ ।

କିଛି ସମୟ ପରେ ଜଣେ ଇଂରେଜ ଅଫିସର ବାହାରକୁ ବାହାରିଲେ । ରାଜଗୁରୁ ତାଙ୍କୁ ଗୁଳି ନ ଚଳାଇବା ପାଇଁ ପ୍ରସ୍ତୁତ ହୋଇଥିବାରୁ ଭଗତ ସିଂହ ତାଙ୍କୁ ଗୁଳି ନ ଚଳାଇବାକୁ ଇସାରା ଦେଲେ । ତାଙ୍କର ଉଦ୍ଦେଶ୍ୟ, ଗୁଳି ଚଳାଇବା ପୂର୍ବରୁ ଦେଖିବା ଉଚିତ ସେ ଫୋର୍ଟ କିମ୍ବା ଅନ୍ୟ କେହି ।

ଭଗତ ସିଂହଙ୍କର ଇସାରାକୁ ନମାନି ରାଜଗୁରୁ ଗୁଳି ଚଳାଇଦେଲେ । ସେହି ଗୋଟିଏ ଗୁଳିରେ ଅଫିସର ଜଣକ ତଳେ ପଡ଼ିଲେ । ପରେ ଜଣା ପଡ଼ିଲା, ହତ୍ୟା କରାଯାଇଥିବା ଅଫିସର ଫୋର୍ଟ ନୁହନ୍ତି—ସେ ପୁଲିସ ଅଫିସର ସାଣ୍ଡର୍ସ୍ । ପରେ ରାଜଗୁରୁଙ୍କର ସାଥୀମାନେ ତାଙ୍କର ଅବ୍ୟର୍ଥ ଲକ୍ଷ୍ୟକୁ ପ୍ରଶଂସା

କରିବାରୁ ସେ କହିଲେ—ମୁଁ ପ୍ରକୃତରେ ତା ଗୁଣ୍ଡିକୁ ଗୁଳି ମାରିଥିଲି, ତାହା ଯାଇ ସାଣ୍ଡର୍ସ୍ ମୁଣ୍ଡରେ ବାଜିଲା । ସେହିଦିନ ପର୍ଯ୍ୟନ୍ତ ହତ୍ୟାର ଅପରାଧୀ ଧରାପଡ଼ିଲେ ନାହିଁ ।

ଦିନେ ଏକ ଅନ୍ଧାରୁଆ କୁଠରୀରେ ରାଜଗୁରୁଙ୍କ ସାଥୀମାନେ ଏକାଠି ବସିଥାନ୍ତି, ରାଜଗୁରୁ ସେଠାରେ ବସିଥାନ୍ତି । ସେମାନେ ନିଶ୍ଚିତ ଜେଲ୍ ଓ ପରେ ପରେ ମୃତ୍ୟୁଦଣ୍ଡ ପାଇବେ, ଏକଥା ଜାଣି ସେହି ବିଷୟରେ ଆଲୋଚନା କରୁଥାନ୍ତି । କଥା ପ୍ରସଙ୍ଗରେ ରାଜଗୁରୁଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ କହି ପକାଇଲେ—"ରାଜଗୁରୁ ଯେପରି ଖାମ୍‌ଖିଆଲି ଲୋକ, ତାଙ୍କୁ ଯଦି ପୁଲିସ ମାଡ଼ଦେଇ ପଚାରିବେ, ସେ ଆମ ସମସ୍ତଙ୍କ ନାମ କହିଦେବ । ଏକଥା ଶୁଣି ସମସ୍ତେ ହସି ପକାଇଲେ ।

ଏ କଥାଟା ରାଜଗୁରୁଙ୍କୁ ଭାରି ବାଧିଲା । ସେ କିପରି ଦୃଢ଼ମନା ଏକଥା ତାଙ୍କ ସାଥୀମାନଙ୍କୁ ଦେଖାଇଦେବା ପାଇଁ ଲୁହାଛଡ଼ ଖଣ୍ଡେ ନିଆଁରେ ପକାଇଦେଲେ । କିଛି ସମୟ ପରେ ସେ ଲୁହାଛଡ଼ ଖଣ୍ଡିଟି ନିଆଁ ପରି ନାଲି ଦିଶିଲା । ରାଜଗୁରୁ ତତଲା ଛଡ଼ଟିକୁ ନିଜ ଗୁଣ୍ଡିରେ ବାରମ୍ବାର ଘଷିବାରେ ଲାଗିଲେ । ତାଙ୍କର ସାଥୀମାନେ ରାଜଗୁରୁଙ୍କର ଏପରି କାମ ଦେଖି ଭାବିଲେ— ରାଜଗୁରୁ ବୋଧେ ପାଗଳ ହୋଇଗଲେ । ଅନ୍ୟମାନେ ଦୌଡ଼ି ଯାଇ ସେ ତତଲା ଛଡ଼ଟିକୁ ତାଙ୍କଠାରୁ ଛଡ଼ାଇ ନେଲେ । ସେତେବେଳକୁ ତାଙ୍କ ଦେହରେ ସାତଟି ସ୍ଥାନ ପୋଡ଼ି ଯାଇଥିଲା । ଏଥିରେ ସମସ୍ତ ସାଥୀ ମନ ଦୁଃଖ କଲେ ।

କିଛୁଦିନ ପରେ କ୍ରାନ୍ତିକାରୀ ଦଳର ସମସ୍ତ ଅପରାଧୀ ଧରାପଡ଼ିଲେ । ରାଜଗୁରୁ, ଭଗତ ସିଂହ ଓ ସୁଖଦେବଙ୍କୁ ଫାଶୀ ଦଣ୍ଡ ମିଳିଲା । ୧୯୩୧ ମସିହା ମାର୍ଚ୍ଚ ମାସ ୨୩ ତାରିଖରେ ଲାହୋର ଫାଶୀଖୁଣ୍ଟରେ ୩ ଜଣ ବୀର ଝୁଲି ପଡ଼ିଲେ । ଫାଶୀ ସମୟରେ ସେମାନଙ୍କର ମୁଖ ଅତି ଉଜ୍ଜ୍ୱଳ ଦିଶୁଥିଲା । ସେମାନେ ଗର୍ବର ସହ ଦେଶ ବନ୍ଦନା ଗାଇ ଗାଇ ଫାଶୀ ଦଉଡ଼ି ନିଜ ବେକରେ ଲଗାଇଦେଲେ । ଏମାନଙ୍କ ପାଇଁ ଭାରତମାତା ଗର୍ବ ଅନୁଭବ କରେ ।

ଜୟହିନ୍ଦ୍ !

—୪୦୪—

# ଦେଶଦ୍ରୋହୀର ହତ୍ୟାକାରୀ

ମୁଜାଫରପୁର ବୋମାକାଣ୍ଡ କାରଣରୁ ଭାରତର ଅସଂଖ୍ୟ ନିରୀହ ଲୋକଙ୍କୁ ଇଂରେଜ ସରକାର ଗିରଫ କରିଥାନ୍ତି । ସେମାନଙ୍କ ସହିତ କହ୍ନାଇଲାଲ ଦତ୍ତ ମଧ୍ୟ ଗିରଫ ହୋଇ ଅଲିପୁର ଜେଲରେ ଭର୍ତ୍ତି ହେଲେ । ସେ ବି. ଏ. ପାସ କରିବା ପରେ କଲିକତା ଆସି କ୍ରାନ୍ତିକାରୀ ଦଳରେ ମିଶିଥିଲେ । ନିଜର ନିଷ୍ଠା ଓ ବୀରତ୍ୱ ପ୍ରଦର୍ଶନ କରି ସେ ଖୁବ୍ କମ୍ ଦିନ ମଧ୍ୟରେ ଦଳର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲେ । କ୍ରାନ୍ତିକାରୀମାନଙ୍କର ସଙ୍ଗଠନ ପାଇଁ ସେ ଚନ୍ଦ୍‌ନଗର ଯାଇ ଚଟ୍ଟଗ୍ରାମ ଆଦି ସ୍ଥାନ ବୁଲି ସେଠାରେ ବୋମା ଓ ଦେଶୀ ବନ୍ଧୁକ ତିଆରି କରିବା ଶିଖିଥିଲେ ।

କହ୍ନାଇଲାଲ ଜେଲରେ ଥାଇ ମଧ୍ୟ ଭାରି ସତେଜ ଥାଆନ୍ତି । ସେ ହସଖୁସି କରି ସମୟ କାଟୁଥିଲେ । ସେଠାରେ ଥାଇ ସେ ଶୁଣିଲେ, ନରେନ୍ଦ୍ର ଗୋସାଇଁ ଇଂରେଜ ସରକାରଙ୍କର ସାକ୍ଷୀ ହୋଇଛନ୍ତି । ଏକଥା ଶୁଣି ତାଙ୍କର ରକ୍ତ ଟକ୍‌ମକ୍ ହୋଇ ଫୁଟି ଉଠିଲା । ସେ ପ୍ରତିଜ୍ଞା କଲେ, ବିଶ୍ୱାସଘାତକ ଦେଶଦ୍ରୋହୀ ନରେନ୍ଦ୍ର ଗୋସାଇଁଙ୍କୁ ନିଶ୍ଚୟ ଯମପୁର ପଠାଇବେ । କୌଶଳ କରି ପେଟ ବେମାରିର ଛଳନା କରି ସେ ଡାକ୍ତରଖାନାରେ ଭର୍ତ୍ତି ହୋଇଗଲେ ।

କହ୍ନାଇଲାଲଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ସତ୍ୟେନ୍ ବସୁ ମଧ୍ୟ ଅନ୍ୟ ଏକ ବେମାରର ଛଳନା କରି ଡାକ୍ତରଖାନାକୁ ଆସିଥିଲେ ।

ଦିନେ ସତ୍ୟେନ୍ ବସୁ ନରେନ୍ଦ୍ର ଗୋସେଇଁଙ୍କ ସହ ମିଶି ସରକାରୀ ସାକ୍ଷୀ ହେବାକୁ ରାଜି ହେବାର ଛଳନା କଲେ । ଏକଥା ଶୁଣି ଗୋସେଇଁ ଖୁବ୍ ଖୁସି ହେଲେ । ଜଣେ ବିଦେଶୀ ଦେହରକ୍ଷୀ ସହିତ ସେ ସତ୍ୟେନ୍‌ଙ୍କ ସହ ସାକ୍ଷାତ୍ କରିବାକୁ ଆସିଲେ । ସୁବିଧା ଦେଖି ସତ୍ୟେନ୍ ଗୋସେଇଁଙ୍କୁ ହଠାତ୍ ଆକ୍ରମଣ କଲେ । ଦେହ-ରକ୍ଷୀ ଜୀବନ ନେଇ ଧାଇଁ ପଳାଇଲା । ସେତିକିବେଳେ କହ୍ନାଇଲାଲଙ୍କ ବନ୍ଧୁକ ଗର୍ଜି ଉଠିଲା । ଗୋସେଇଁଙ୍କ ଶବ ତଳେ ଢଳି ପଡ଼ିଲା ।

ଗୋସେଇଁ ଯଦି ସରକାରୀ ସାକ୍ଷୀ ଦେଇଥାନ୍ତା, ତା ହେଲେ ବିପ୍ଳବୀ ଦଳ ମହାବିପଦରେ ପଡିଥାନ୍ତା । ଦେଶଦ୍ରୋହୀ ଗୋସେଇଁଙ୍କୁ ହତ୍ୟାକରି ଉଚିତ୍ କାର୍ଯ୍ୟ କରି ସେ ଫାଶୀ ଦଣ୍ଡ ପାଇଲେ । ଅଦାଲତରେ ସେ ନିଜର ଫାଶୀ ଦଣ୍ଡ ପାଇବା କଥା ଶୁଣି ଠୋ ଠୋ ହୋଇ ହସି ଉଠିଲେ । ଇଂରେଜ ଜଜ୍ ଆଶ୍ଚର୍ଯ୍ୟ ହୋଇ କହ୍ନାଇଲାଲଙ୍କୁ ଅନାଇ ରହିଲେ ।

୧୯୦୮ ନଭେମ୍ବର ୧୦ ତାରିଖରେ 'ବନ୍ଦେ ମାତରମ୍' ମହାମନ୍ତ୍ର ଧ୍ୱନି କରି କହ୍ନାଇଲାଲ ଫାଶୀଖୁଣ୍ଟରେ ଝୁଲି ପଡ଼ିଲେ । ମାତୃଭୂମି ପାଇଁ ଜୀବନ ଦେବାର ଆନନ୍ଦରେ ଫାଶୀଦିନ ତାଙ୍କର ଓଜନ ୧୬ ପାଉଣ୍ଡ ବଢ଼ି ଯାଇଥିବା ଜଣା ପଡ଼ିଥିଲା । ତାଙ୍କର ଶେଷ ଜୀବନର ଇଚ୍ଛା ଥିଲା—ତାଙ୍କ ପୁନର୍ ମଧ୍ୟ ଜନ୍ମଭୂମି ପାଇଁ ପ୍ରାଣ ଦେବ ।

କହ୍ନାଇଲାଲଙ୍କର ଶବକୁ ନେବା ପାଇଁ ତାଙ୍କ ପରିବାର ଓ ବନ୍ଧୁମାନେ ଆସି ପହଞ୍ଚିଲେ । ଶବଟି କମଳ ଢଙ୍କା ହୋଇ ରହିଥାଏ । କମଳଟିକୁ ଟେକିବାକୁ କାହାରି ସାହସ ପାଉ ନଥାଏ । ସମସ୍ତେ ଛିଡ଼ା ହୋଇ କାନ୍ଦୁଥିଲେ । ଜଣେ ଇଂରେଜ ଅଫିସର ସେଠାରେ ଆସି ପହଞ୍ଚି କହିଲେ—"ଆପଣମାନେ କାନ୍ଦୁଛନ୍ତି କାହିଁକି ? ଯେଉଁ ଦେଶ ଏପରି ବୀରପୁଅକୁ ଜନ୍ମ ଦେଇ ନିଜକୁ ଗର୍ବ ମନେ କରେ, ତା ପାଇଁ କାନ୍ଦିବା ଉଚିତ ନୁହେଁ ।" ଏହି ଦି ପଦ କଥାରେ ସମସ୍ତଙ୍କ କାନ୍ଦ ବନ୍ଦ ହୋଇ ଯାଇଥିଲା ।

କେଉଡ଼ାତଳା ଶ୍ମଶାନରେ ତାଙ୍କର ଶବ ଦାହ କରା ଯାଇଥିଲା । ସେହି ଶବଯାତ୍ରାରେ ଯେପରି ଭିଡ଼ ହୋଇଥିଲା ପୂର୍ବରୁ ଏପରି କେବେ ହୋଇ ନଥିଲା । ଆଜି କେଉଡ଼ାତଳା ଶ୍ମଶାନ ସ୍ୱାଧୀନ ଭାରତର ଏକ ତୀର୍ଥକ୍ଷେତ୍ର ହୋଇ ଯାଇଛି ।

ଜୟହିନ୍ଦ୍ !



# ଶାହୀଦ ବୀର ଗୁରୁଚନ୍ଦ୍ର

ଲର୍ଡ଼ କର୍ଜନ ବଙ୍ଗଳାକୁ ଦୁଇଭାଗ କରି ଦୁର୍ବଳ କରି ଦେବାକୁ ଚେଷ୍ଟା କରୁଥାନ୍ତି । ତାଙ୍କୁ ବିରୋଧ କରିବା ପାଇଁ ବଙ୍ଗଳାରେ ଏକ ବିରାଟ କ୍ରାନ୍ତିକାରୀ ଦଳ ଗଠନ ହୋଇଥାଏ । ସେହି ସମୟରେ ବୀର ଗୁରୁଚନ୍ଦ୍ର ଖବଡ଼ାଠାରେ ହିତୈଷୀ ପ୍ରେସ୍‌ରେ କାମ କରୁଥିଲେ । ତାଙ୍କର ଡାହାଣ ହାତଟା ପିଲଦିନୁ ପୂରା ଅକାମୀ ହୋଇଯାଇ ଥିବାରୁ ସେ କେବଳ ବାମ ହାତରେ ସବୁ କାମ କରୁଥାନ୍ତି ।

ଇଂରେଜମାନଙ୍କର ଅତ୍ୟାଚାର ଓ ଅନ୍ୟାୟର ପ୍ରତିବାଦ କରିବା ପାଇଁ ସେ କ୍ରାନ୍ତିକାରୀ ଦଳରେ ଯୋଗ ଦେଲେ । ତାଙ୍କର ଡାହାଣ ହାତଟା ଅକାମୀ ଥିବାରୁ ତାଙ୍କୁ ଦଳରେ ଯୋଗ ଦେବା ପାଇଁ ବହୁତ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପରେ ପରେ ସେ ଗୋଟିଏ ହାତରେ ବନ୍ଧୁକ ଚଳାଇବାରେ ଧୂରନ୍ଧର ହୋଇଗଲେ ।

ଏବେ "ମାଣିକତାଲା ବୋମା କେଶ୍" ମକଦ୍ଦମା ସାରା ଦେଶରେ ଚହଳ ପକାଉଥାଏ । ବିପ୍ଳବୀ ଦଳର ଶ୍ରୀ ଅରବିନ୍ଦ ତାଙ୍କର ଭାଇ ବାରୀନ୍ଦ୍ର ଘୋଷ ଓ ବହୁତ ନାମଜାଦା ନେତାମାନଙ୍କୁ ଅଲିପୁର ଜେଲରେ ଭର୍ତ୍ତି କରାଗଲା । କ୍ରାନ୍ତିକାରୀ ଦଳ ତରଫରୁ ଚିତ୍ତରଞ୍ଜନ ଦାସ ଏବଂ ଇଂରେଜ ସରକାରଙ୍କ ତରଫରୁ ଆଶୁତୋଷ ବିଶ୍ୱାସ ଲଢ଼ୁଥାନ୍ତି । ଦେଶଦ୍ରୋହୀ ଆଶୁତୋଷ ମିଛ ସାକ୍ଷୀ ଦେଇ ବନ୍ଦୀ ଥିବା

ନେତାମାନଙ୍କୁ କଠିନ ଦଣ୍ଡରେ ଦଣ୍ଡିତ କରିବା ପାଇଁ ପ୍ରାଣପଣେ ଲାଗିଥାନ୍ତି । ତେଣୁ ବିପ୍ଳବୀ ଦଳର ସଭାରେ ସ୍ଥିର ହେଲା— ଇଂରେଜଙ୍କ ଅଣ୍ଟା ଭାଙ୍ଗିବା ପାଇଁ କୁକୁର ଆଶୁତୋଷ ବିଶ୍ୱାସକୁ ପ୍ରଥମେ ହତ୍ୟା କରିବାକୁ ହେବ । ଏପରି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନେବ କିଏ ?

ହଠାତ୍ ସଭାରେ ଠିଆ ହୋଇ ଚାରୁଚନ୍ଦ୍ର ଘୋଷଣା କରିଲେ —"ଏ ଦାୟିତ୍ୱ ମୋତେ ଦିଅନ୍ତୁ, ମୁଁ ନିଶ୍ଚୟ ଏଥିରେ ସଫଳ ହେବି ।" ଚାରୁଚନ୍ଦ୍ରଙ୍କର ଏପରି କଥା ଶୁଣି ସଭାରେ ଉପସ୍ଥିତ ସଭ୍ୟମାନେ ସମସ୍ତେ ହସି ଉଠିଲେ । ସଭାପତି ଚାରୁଚନ୍ଦ୍ରଙ୍କୁ ବୁଝାଇ କହିଲେ—"ତୁମର ଗୋଟିଏ ହାତଦ୍ୱାରା ଏସବୁ କାମ ହୋଇପାରିବ ନାହିଁ ।"

ଶେଷରେ ଚାରୁଚନ୍ଦ୍ରଙ୍କ ଜିଦ୍ ଓ ସାହସ ଦେଖି ତାଙ୍କୁହିଁ ସେହି ଦାୟିତ୍ୱ ଦିଆଗଲା ।

୧୯୦୯ ମସିହାର ଜାନୁଆରୀ ୧୦ ତାରିଖ । ଚାରୁଚନ୍ଦ୍ର ସାଥୀମାନଙ୍କ ଦ୍ୱାରା ତିଆରି ଗୁଳିଭରା ରିଭଲଭର୍ ନିଜର ଅକାମୀ ହାତରେ ବନ୍ଧାଇ ନେଲେ । ରିଭଲଭର୍ ଘୋଡ଼ାରେ ଖଣ୍ଡେ ସୂତୁଲି ବାନ୍ଧିଲେ ଯେପରି କି ସେ ବାମ ହାତଦ୍ୱାରା ସୂତୁଲିକୁ ଟାଣି ଘୋଡ଼ାକୁ ଟିପି ପାରିବେ । ତା ପରେ ସେ ନିଜ ଅକାମୀ ହାତକୁ ପକେଟରେ ଭର୍ତ୍ତି କରି ଆଲିପୁର ଅଦାଲତରେ ପ୍ରବେଶ କଲେ । ଆଶୁତୋଷ ବିଶ୍ୱାସ ନିଜର କାମ ଶେଷ କରି ଘରକୁ ବାହାରି ଯାଉଥିବା ସମୟରେ ଚାରୁଚନ୍ଦ୍ରଙ୍କର ରିଭଲଭର୍ ଗର୍ଜି ଉଠିଲା । ଆଶୁତୋଷ ଜୀବନ ରକ୍ଷା ପାଇଁ ଚିତ୍କାର କରି କୋର୍ଟ

ଇନ୍‌ସପେକ୍ଟରଙ୍କ ବସାଘରକୁ ଧାଇଁଲେ । ଚାରୁଚନ୍ଦ୍ର କିନ୍ତୁ ଛାଡ଼ିବା ଲୋକ ନୁହେଁ । ସେ ତାର ପଛେ ପଛେ ଗୋଡ଼ାଇ ପିସ୍ତଲ୍ ଗୁଳି ଚଳାଇଦେଲେ । ସେହି ଗୁଳିଟି ଆଶୁତୋଷର ଶେଷ ନିଃଶ୍ୱାସ କାଢ଼ି ନେଇଗଲା ।

ପୁଲିସ ଯେତେବେଳେ ଚାରୁଚନ୍ଦ୍ରଙ୍କୁ ଚାରିଦିଗରୁ ଘେରି-ଗଲେ । ସେ ତାଙ୍କର ପିସ୍ତଲ୍ ଗୁଳିଟି ଫୁଟାଇଦେଲେ । ସେ ଗୁଳିଟି ଯାଇ ଅଦାଲତର କାନ୍ଥରେ ବାଜିଲା । ଚାରୁଚନ୍ଦ୍ର ଗିରଫ ହେଲେ, କିନ୍ତୁ ସେ ନିଜର କର୍ତ୍ତବ୍ୟ ଠିକ୍ ଭାବେ କରିପାରି ଥିବାରୁ ତାଙ୍କ ମନ ଆନନ୍ଦରେ ନାଚି ଉଠୁଥାଏ ।

୧୯୦୯ ଫେବୃୟାରୀ ୧୩ ତାରିଖରେ ମକଦ୍ଦମା ଚାଲିଲା । ଚାରୁଚନ୍ଦ୍ର ଅଦାଲତରେ କହିଲେ--"ମୁଁ ଏ ଦେଶର ପ୍ରକୃତ ଶତ୍ରୁକୁ ହତ୍ୟା କରିଛି ଏବଂ ଏହା ମୁଁ ନିଜେ ନିଜର ଇଚ୍ଛାରେ କରିଛି । ଏଥିପାଇଁ ଆଉ କେହି ଦାୟୀ ନୁହଁନ୍ତି ।" ସେହି ମାସ ୨୩ ତାରିଖରେ ସେସନ୍ସ ଜଜ୍ ଚାରୁଚନ୍ଦ୍ରଙ୍କୁ ଫାଶୀ ଦଣ୍ଡ ଦେଲେ । ମାର୍ଚ୍ଚ ମାସ ୧୩ ତାରିଖରେ ତାଙ୍କୁ ଫାଶୀ ଦିଆଗଲା । ଫାଶୀ ସମୟରେ ଚାରୁଚନ୍ଦ୍ର ସବୁଠାରୁ ବେଶି ଆନନ୍ଦିତ ଥିଲେ । ଶେଷ ସମୟରେ ସେ ଦେଶମାତୃକାର ବନ୍ଦନ ବନ୍ଦନା ଗାନ କରୁଥିଲେ । ଶେଷରେ ସେ 'ବନ୍ଦେ ମାତରମ୍' ମନ୍ତ୍ର ପାଠ କରି ଫାଶୀଖୁଣ୍ଟରେ ଝୁଲି ପଡ଼ିଲେ ।

ଜୟହିନ୍ଦ୍ !

# ପ୍ରଥମ ଶହୀଦ—ଜଗଜ ସେଠ୍

ଯେଉଁମାନେ ବ୍ୟକ୍ତିଗତ ସ୍ୱାର୍ଥ ତ୍ୟାଗ କରି, ଜୀବନକୁ ବାଜି ଲଗାଇ ଦେଶ, ଜାତି ପାଇଁ ଆତ୍ମବଳି ଦିଅନ୍ତି; ସେମାନଙ୍କୁ ଶହୀଦ କୁହାଯାଏ । ଆମ ଦେଶ ଭାରତବର୍ଷ ଇଂରେଜ ଶାସନ ପୂର୍ବରୁ ଖଣ୍ଡ-ବିଖଣ୍ଡ ହୋଇ ବିଭିନ୍ନ ଶାସକମାନଙ୍କ ଦ୍ୱାରା ଶାସିତ ହୋଇଛି । ସେହି ସମୟ ମଧ୍ୟରେ ଦେଶ ଓ ଜାତି ପାଇଁ ଯେ, କେହି ଜୀବନୋତ୍ସର୍ଗ କରି ନାହାନ୍ତି, ସେ କଥା ଠିକ୍ ନୁହେଁ । ପ୍ରବଳ ପରାକ୍ରମୀ ଇଂରେଜ ଜାତିର ଶାସନ ଫଳରେ ଆମେ ଯେ କେବଳ ହରାଇଛନ୍ତି ଓ ଲାଞ୍ଛିତ ହୋଇଛନ୍ତି, ସେ କଥା ବି ସମ୍ପୂର୍ଣ୍ଣ ଠିକ୍ ନୁହେଁ । ଇଂରେଜ ଶାସନ ଫଳରେ "ଆମେ ସବୁ ଭାରତୀୟ ଗୋଟିଏ ଜାତି—ଗୋଟିଏ ମାଆର ସନ୍ତାନ, ଭାରତ ଗୋଟିଏ ଦେଶ" ହେବା ସମ୍ଭବ ହୋଇପାରିଛି ।

୧୮୫୭ ମସିହାର ସିପାହୀ ବିଦ୍ରୋହକୁ ଐତିହାସିକମାନେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଭାବରେ ଗ୍ରହଣ କରିଛନ୍ତି । ତଥାପି ଏଥିରେ ମତଭେଦ ଦେଖାଯାଏ । ସେ ଯାହାହେଉ—

ସିପାହୀ ବିଦ୍ରୋହରେ ପ୍ରାଣତ୍ୟାଗ କରିଥିବା ବୀରମାନଙ୍କୁ ଶହୀଦ ସ୍ୱୀକୃତରେ ସମ୍ମାନ ଦିଆଯାଏ ।

ଭାରତର ପ୍ରଥମ ଶହୀଦ କିଏ ? ଏହା ଏକ ପ୍ରଶ୍ନବାଚୀ । ୧୮୫୭ ମସିହାର ସିପାହୀ ବିଦ୍ରୋହ ସାରା ଦେଶରେ ଶିହରଣ ସୃଷ୍ଟି କରିପାରିଥିଲା । ଅଧିକାଂଶ ରାଜ୍ୟର ସ୍ୱାଧୀନତା ସଂଗ୍ରାମୀ ଏଥିରେ ଯୋଗ ଦେଇଥିଲେ । ତେଣୁ ଏହା ସ୍ୱାଧୀନତା ସଂଗ୍ରାମର ଯୋଗ୍ୟତା ହାସଲ କରିପାରିଲା ।

* ୧୮୫୭ ମସିହାର ବହୁ ପୂର୍ବରୁ ଦେଶପ୍ରେମୀ ଜଗତ୍ ସେଠ୍ ଇଂରେଜମାନଙ୍କର ଚକ୍ରାନ୍ତ ଏବଂ ଯୋଜନାକୁ ଠିକ୍‌ଭାବେ ଜାଣି ପାରିଥିଲେ । ଜଗତ ସେଠ୍‌ଙ୍କର ପୂରା ନାମ ଥିଲା—ଜଗତ୍ ସେଠ୍ ରାମଜୀ ଦାସ ଗୁଡ଼ଓ୍ୱାଲା । ସେତେବେଳେ ତାଙ୍କର ବ୍ୟବସାୟ ୟୁରୋପ-ଆଫ୍ରିକାର ବହୁ ଦେଶରେ ଚାଲୁଥିଲା । ସେ ଥିଲେ, ଭାରତର ଜଣେ ବରିଷ୍ଠ କୋଟିପତି । ଦିଲ୍ଲୀର ବାଦଶାହା ବାହାଦୂରଶାହାଙ୍କର ସେ ଥିଲେ ଅତି ଘନିଷ୍ଠ ବନ୍ଧୁ । ରାଜ୍ୟ ଶାସନ କାର୍ଯ୍ୟ ପାଇଁ ବାଦଶାହା ଜଗତ୍ ସେଠ୍‌ଙ୍କ ଠାରୁ ଲକ୍ଷ ଲକ୍ଷ ଟଙ୍କା ଧାର ଓ ଋଣ ସୂତ୍ରରେ ଆଣୁଥିଲେ । ଜଗତ୍ ସେଠ୍‌ଙ୍କର ଅପୂର୍ବ ବ୍ୟକ୍ତିତ୍ୱ, ଅମାପ ଦେଶପ୍ରେମ, ଅଗାଧ ସମ୍ପତ୍ତି ତାଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲା ।

ଥରେ ଜଗତ୍ ସେଠ୍ ୟୁରୋପରେ ଥିବା ସମୟରେ ଭାରତ ସମ୍ବନ୍ଧୀ ଚକ୍ରାନ୍ତ ବିଷୟରେ ଶୁଣିବାକୁ ପାଇଲେ । ହଠାତ୍ ସେ ନିଜ ଦେଶକୁ ଫେରି ଆସି, ତାଙ୍କର ଅନ୍ତରଙ୍ଗ ବନ୍ଧୁ ଦିଲ୍ଲୀର

* ଉତ୍କଳ ପ୍ରସଙ୍ଗ ଅଗଷ୍ଟ ସଂଖ୍ୟା ୧୯୭୫ ।

ବାଦଶାହା ବାହାଦୂରଶାହାଙ୍କ ସହିତ ଗୁପ୍ତ ମନ୍ତ୍ରଣା କଲେ । ତାଙ୍କ ସଂଯୋଗରେ ବିରାଟ ଯୋଜନାର ପରିକଳ୍ପନା କରାଗଲା । ଭାରତର ଦେଶୀୟ ରାଜାମାନଙ୍କ ସହ ଯୋଗାଯୋଗ କରାଗଲା । ସମସ୍ତ ଦିଗରୁ ସାହାଯ୍ୟ ସହଯୋଗ ମିଳିବାର ପ୍ରତିଶ୍ରୁତି ପାଇ, ଜଟନ ସେଟ୍‌ଙ୍କ ନେତୃତ୍ବରେ ଇଂରେଜମାନଙ୍କ ସହ ସମ୍ମୁଖ ଯୁଦ୍ଧ ପାଇଁ ବାଦଶାହା ଡାକରା ଦେଲେ ।

ଅଚାନକ ଆକ୍ରମଣରେ ଇଂରେଜ ଅଫିସର ଅସ୍ତବ୍ୟସ୍ତ ହୋଇ ପଡ଼ିଲେ । କେତେକ ଇଂରେଜ ସୈନ୍ୟ ଓ ସାହେବ ମୃତ୍ୟୁର ଶିକାର ହେଲେ । ସାରା ଭାରତ ହୁଲୁସ୍ଥୁଲ୍ ହୋଇ ପଡ଼ିଲା । ଯୋଜନାବଦ୍ଧ ଭାବେ ସଙ୍ଗଠିତ ଭାରତୀୟ ମୁକ୍ତିବାହିନୀ—ଦେଶୀୟ ରାଜାଙ୍କ ରଣକୌଶଳ ଓ ଗୁପ୍ତ ଷଡ଼ଯନ୍ତ୍ର ବିଷୟରେ ଇଂରେଜ-ମାନେ ଅନ୍ତ ପାଉ ନଥାନ୍ତି ।

ଆମ ଦେଶରେ ଶିଖି-ମଲାଇଙ୍କ ପରି ଦେଶ ଦ୍ରୋହୀର ଅଭାବ ନାହିଁ । ସାମାନ୍ୟ ଅର୍ଥର ପ୍ରଲୋଭନରେ ନିଜ ଦେଶ-ନିଜ ଜାତିକୁ ଶତ୍ରୁ ହାତରେ ଟେକି ଦେବାକୁ ମାଇମନା ବି ଏଠାରେ ଜନ୍ମ ନିଅନ୍ତି । ଫୁଲ ବଗିଚାରେ ବିଛୁଆତି ବଳେ ବଢେ ଉଠେ ।

ସେହିପରି ଜଣେ ଦେଶଦ୍ରୋହୀ ଭାରତୀୟ ସୁବିଧା ସୁଯୋଗ ଦେଖି ଇଂରେଜ ଅଫିସରଙ୍କୁ ଷଡ଼ଯନ୍ତ୍ର ବିଷୟରେ ସମସ୍ତ ବୁଝାଇ ଦେଲା । କ୍ଷଣିକ ଭିତରେ ସବୁ ଓଲଟ ପାଲଟ ହୋଇଗଲା । ସବୁ ଯୋଜନା ଭଣ୍ଡୁର ହୋଇଗଲା । ଶହ ଶହ ଦେଶପ୍ରେମୀ ବନ୍ଦୀ ହେଲେ । ଦେଶୀୟ ରାଜା ଓ ବାଦଶାହଙ୍କ ସହ ଜଟନ୍

ସେଠ୍‌ଙ୍କୁ ଅକଥନୀୟ ଅତ୍ୟାଚାର ସହିବାକୁ ପଡ଼ିଲା । ଦେଶଦ୍ରୋହୀଟି ଯଦି ଆଉ ଗୋଟିଏ ଦିନ ଡେରି କରିଥାଆନ୍ତା; ଭାରତବର୍ଷକୁ ସ୍ୱାଧୀନ ହେବା ପାଇଁ ଏତେ ବର୍ଷ ଅପେକ୍ଷା କରିବାକୁ ପଡ଼ି ନଥାନ୍ତା ।

ବିଚାର ପରେ ମହାମାନ୍ୟ ଜଗନ୍ ସେଠ୍‌ଙ୍କୁ ଦିଲ୍ଲୀର ଗୃହମନ୍ତ୍ରୀଙ୍କ ଛକଠାରେ ଶିକାରୀ କୁକୁରମାନଙ୍କ ଦ୍ୱାରା କାମୁଡ଼ାଇ କାମୁଡ଼ାଇ ରକ୍ତାକ୍ତ ଅବସ୍ଥାରେ ଫାଶୀକାଠରେ ଝୁଲାଇ ଦେଲେ ।

ବହୁ ଅର୍ଥ, ଉଚ୍ଚ ପଦବୀର ପ୍ରଲୋଭନରେ ସେ ଭୁଲି ନଥିଲେ । ଫାଶୀ ପୂର୍ବରୁ ସେ ଶେଷ ଭିକ୍ଷା ମାଗିଥିଲେ ମୃତ୍ୟୁ । ଫାଶୀଖୁଣ୍ଟରେ ଠିଆ ହୋଇ ନିର୍ଭୀକ ସ୍ୱରେ କହିଥିଲେ—"ମୁଁ ଦେଶ ପାଇଁ ପ୍ରାଣ ଉତ୍ସର୍ଗ କରୁଛି । ଏ କଥା ନିଶ୍ଚିତ ଯେ, ଆମର ଲହୁ ଲହୁ ମିଶା ଭୂଇଁରୁ ଯେଉଁ ବୀର ସନ୍ତାନ ଜନ୍ମ ନେବେ, ସେମାନେ ଇଂରେଜ ସାମ୍ରାଜ୍ୟକୁ ରସାତଳଗାମୀ କରାଇବେ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ଜଗନ ସେଠ୍ ଫାଶୀଖୁଣ୍ଟରେ ଝୁଲିପଡ଼ିଲେ, ତାଙ୍କର ନିର୍ଭୀକ ଓ ଦୃଢ଼ ଦେଶପ୍ରେମ ଦେଖି ଇଂରେଜମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ତେଣୁ ଜଗନ୍ ସେଠ୍ ଭାରତର 'ପ୍ରଥମ ଶହୀଦ'ର ଆସନ ଦାବୀ କରିବା ଯଥାର୍ଥ । ସେ ହେଉଛନ୍ତି—ପ୍ରଥମ ସ୍ୱାଧୀନତା ସଂଗ୍ରାମୀ । ପ୍ରଥମ ଶହୀଦ ।

ଜୟହିନ୍ଦ୍ !

# ଇରମ ଶହୀଦ ବକୁଳ

ବାଲେଶ୍ୱର ଜିଲ୍ଲାର ଇରମ ଗାଁ'ର ଦୋଳ ମେଲଣ ପଡ଼ିଆ ଆମ୍ବତୋଟା । କଟିକଟିଆ ଅନ୍ଧାରରେ ମିଞ୍ଜି ମିଞ୍ଜିଆ ଆଲୁଅ ଦିଶୁଥିବା ଲଣ୍ଠନ ଧରି କେତେ ଜଣ ଲୋକ କ'ଣ ଖୋଜୁଥାନ୍ତି । ହଠାତ୍ ସେମାନେ ଚମକି ପଡ଼ିଲେ—ତାଙ୍କର ପାଦ ଅଟକିଗଲା । ସେଇଠି ଗୁଳିମାଡ଼ ଖାଇ ଚିରନ୍ଦନ ପାଇଁ ଆଖି ବୁଜିଥିଲା— "ବକୁଳ ।"

ତା' ଦେହର ରକ୍ତରେ କଅଁଳିଆ ଘାସମୂଳ ସନ୍ତେଇ ଯାଇଥାଏ । ଆଖି ଦୁଇଟା ମୁଦି ହୋଇ ଆସିଛି । ବଡ଼ ଭୟଙ୍କର ସେଇ ଦୃଶ୍ୟ ।

ଏମିତି କାହିଁକି ହେଲା ?

ଜାଣିଥିବ କବି ବାଞ୍ଛାନିଧିଙ୍କର ଘର ଥିଲା—ଏଇ ଇରମ ଅଞ୍ଚଳରେ । ସେ ସ୍ୱାଧୀନତା ଆନ୍ଦୋଳନର ଜଣେ ବିଶିଷ୍ଟ ନେତା ଥିଲେ । ତାଙ୍କର ଦେଶାତ୍ମବୋଧ ସଙ୍ଗୀତ ଆମ ରାଜ୍ୟରେ ଅପୂର୍ବ

ଜାଗରଣ ସୃଷ୍ଟି କରୁଥିଲା । କବିଙ୍କ ବ୍ୟକ୍ତିତ୍ୱ ଓ ଦେଶପ୍ରେମ ଫଳରେ ସେ ଅଞ୍ଚଳରେ ସ୍ୱାଧୀନତାର ଆନ୍ଦୋଳନ ନିଗି ଉଠିଥାଏ । କବିଙ୍କର ମୃତ୍ୟୁ ପରେ ତାଙ୍କ ନେତୃତ୍ୱରେ ଗଠିତ ମୁକ୍ତିବାହିନୀ ବହୁ ଅସୁବିଧାର ସମ୍ମୁଖୀନ ହେଉଥିଲେ ମଧ୍ୟ, ସେମାନେ ଦୁଇଟି ଭାଗରେ ବିଭକ୍ତ ହେଲେ । ଗୋଟିଏ 'ଶାନ୍ତି ସେନା' ଅନ୍ୟଟି 'ବାନର ସେନା' । 'ଶାନ୍ତିସେନା'ର ବାଣୀ ହେଲା 'କର ବା ମର' । 'ବାନର ସେନା'ର ବାଣୀ ହେଲା— 'ମର ବା ମାର' । ସେମାନେ ଇରମର ଜମିଦାର ଓ ପୁନସ୍ତନ ସତ୍ତ୍ୱପତିଙ୍କୁ ଖଜଣା ନଦେବା ପାଇଁ ଲୋକମତ ସୃଷ୍ଟି କଲେ । ଜମିଦାର ଓ ସତ୍ତ୍ୱପତି ପୁଲିସ ଡକାଇ ବାସୁଦେବପୁର ଥାନାରେ ୧୪୪ ଧାରା ଜାରି କଲେ । ଜନନେତା ହେତୁ ବିପଦର ଆଶଙ୍କା କରି ପୁଲିସ ବନ୍ଧୁକ, ଗୁଳି ସହ ଇରମ ଜମିଦାରଙ୍କ ଘରେ ଡେରା ପକାଇଲେ ।

ପୁଲିସର ଜିଦ୍ ସେମାନେ ସହି ହମିନ୍ତ କରଇ ଦେବେ ନାହିଁ । ତେଣେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜିଦ୍, ଯେ କୌଣସି ପ୍ରକାରେ ରକ୍ତ ଦେଲେ ବି ସଭା କରି ଗାନ୍ଧିଜୀଙ୍କ ଜନ୍ମଦିନ ହେବେ ।

ଏହାପରେ ଉଭୟ ସେନା ମିଶି ହଜାର ହଜାର ଲୋକଙ୍କୁ ଆମ୍ବଗଛ ତଳେ ବସାଇ ମହାତ୍ମା ଗାନ୍ଧୀ, ଗୋପବନ୍ଧୁ ଓ ବାଞ୍ଛାନିଧିଙ୍କ ବାଣୀ ଶୁଣାଇ ବକ୍ତୃତା ଦେଲେ । ପୂର୍ବ ସହାବସ୍ଥା ଚଢ଼ିଆକୁ ଲମ୍ବିଥିବା ଶାଟି ରାସ୍ତାରୁ ଫାଙ୍କା ଆବାଜ କଲେ । ଆଶ୍ଚର୍ଯ୍ୟର କଥା, ଗୁଳିର ଚୋଟକୁ ଖାତିର ନକରି ପ୍ରଜାମାନେ

ଗୁଳି ଶବ୍ଦକୁ ତାଳ ଦେଇ ଉଚ୍ଚସ୍ୱରରେ ଜୟଧ୍ୱନି ଦେଉଥାନ୍ତି । ଲୋକଙ୍କ ଭିତରେ ଉତ୍ତେଜନା ବୃଦ୍ଧି ପାଇବାରୁ ଗୁଡ଼ୁମ୍ ଗୁଡ଼ୁମ୍ ହୋଇ ବନ୍ଧୁକ ଗର୍ଜି ଉଠିଲା । ଜାଲିଆନାବାଗ ହତ୍ୟାକାଣ୍ଡ ପରି ଅନ୍ଧକୂପ ହତ୍ୟା ଚାଲିଲା । ତଥାପି ଭାରତର ସ୍ୱାଧୀନତା ସଂଗ୍ରାମୀ ନେତାମାନେ ବଜ୍ର ଗମ୍ଭୀର କଣ୍ଠରେ "ମହାତ୍ମା ଗାନ୍ଧୀଙ୍କର ଜୟ— ବନ୍ଦେ ମାତରମ୍—ଇନ୍‌କିଲାବ—ଜିନ୍ଦାବାଦ" ଧ୍ୱନି ଦେଉଥାନ୍ତି ।

କେତେ ନେତା, କେତେ ବୀର ସେଇ ମେଳଣ ପଡ଼ିଆରେ ଢଳି ପଡ଼ିଲେ । ସେମାନଙ୍କ ମଧ୍ୟରେ ବାଜିକି ଥିଲା ସର୍ବ କନିଷ୍ଠ— ଯେ ଶିଶୁ ଶହୀଦ ଭାବେ ଓଡ଼ିଶାର ନାମ ରଖିଗଲା ।

ବାଜିକି ନାମ ତାର ସାର୍ଥକ ହେଲା । କ୍ଷଣିକ ଆଲୋକ ଦେଖାଇ ସେ ବାଜିକିର ଧର୍ମ ରକ୍ଷା କଲା । ସ୍ୱାଧୀନତାର ସେତୁବନ୍ଧ ନିର୍ମାଣରେ ଗୁମ୍ଫିତ ଭାବେ ବାଜିକି ଆଜି ଅମର ହୋଇ ରହିଛି— ରହିଥିବ ।

ଜୟହିନ୍ଦ୍ !



# ଦୁଃଖୀ ଶହୀଦ କ୍ଷୁଦୀରାମ

ଅନେକ ସନ୍ତାନ ମଲା ପରେ ଦୁଃଖୀ କ୍ଷୁଦିରାମ ହେଉଛନ୍ତି ଶେଷ ସନ୍ତାନ, ଆଉ ଭଉଣୀଟିଏ ଥାଏ । କ୍ଷୁଦିରାମଙ୍କର ଛଅବର୍ଷ ବେଳକୁ ବାପା ମାଆଙ୍କର ମୃତ୍ୟୁ ହେଲା । କ୍ଷୁଦିରାମ ଏ' ବିରାଟ ଦୁନିଆଁରେ ନିହାତି ଏକା ହୋଇଗଲେ । ତାଙ୍କର ବଡ ଭଉଣୀ ଅନୁରୂପା କ୍ଷୁଦିରାମଙ୍କୁ ନେଇ ନିଜ ପାଖରେ ରଖିଲେ ଏବଂ ମଣିଷ କରିବାର ଦାୟିତ୍ୱ ନେଲେ । ମା'ର ସ୍ନେହ ଦେଲେ । ଭଉଣୀର ସିନା ମଣିଷ କରିବାର ଇଚ୍ଛା, କିନ୍ତୁ କ୍ଷୁଦିରାମର ଭାଗ୍ୟ ଅଲଗା । ଇଚ୍ଛା ଓ ଭାଗ୍ୟ ସମାନ ନୁହେଁ । ସ୍କୁଲ ଯାଇ ମଧ୍ୟ କ୍ଷୁଦିରାମ ପାଠ ପଢ଼େ ନାହିଁ । ଏତେ ଛୋଟବେଳରୁ ହିଁ ସେ ଭାରତବର୍ଷ କଥା ଚିନ୍ତା କରୁଥାଏ ଏବଂ ଗୋରା ଶାସକ ବିରୁଦ୍ଧରେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଉଥାଏ ।

ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ଲିଖିତ 'ଆନନ୍ଦମଠ' (ବନ୍ଦେ ମାତରମ୍) ବହି ଏବଂ ରାଣୀ ଝାନ୍‌ସୀ, ତାନ୍ତିଆ ଟୋପିଙ୍କର ଅପୂର୍ବ ସାହସ କ୍ଷୁଦିରାମଙ୍କୁ ପ୍ରେରଣା ଦେଇଥିଲା । ନିଜର ସ୍ୱାର୍ଥକୁ ଜଳାଞ୍ଜଳି

ଦେଇ ସୁଶୃଙ୍ଖଳିତ ଅନୁଷ୍ଠାନର ମାଧ୍ୟମରେ ଇଂରେଜ ଶାସନକୁ ଧ୍ୱଂସ କରିବାକୁ ହେବ । ଠିକ୍ ଏହି ସମୟରେ ୧୯୦୫ ମସିହାରେ ଲର୍ଡ କର୍ଜନ ବଙ୍ଗଳାକୁ ଦୁଇ ଭାଗରେ ଭାଗ କରିଦେଲେ । ଦେଶ ଭାଗ କରିବା ମୂଳରେ ଇଂରେଜମାନଙ୍କର ଉଦ୍ଦେଶ୍ୟ ଥିଲା— ବିଦ୍ରୋହୀମାନଙ୍କୁ ଭାଗ ଭାଗ କରି ଶାସନ କରିବା, କାରଣ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ୧୮୮୫ ମସିହାରେ "ଭାରତୀୟ ଜାତୀୟ କଂଗ୍ରେସ" ନାମରେ ଏକ ଅନୁଷ୍ଠାନ ଗଢ଼ା ହୋଇଥିଲା । ଭାରତର ବିଭିନ୍ନ ସ୍ଥାନରୁ ବଙ୍ଗ ଭଙ୍ଗ ଆଇନକୁ ବିରୋଧ କଲେ ମଧ୍ୟ ଇଂରେଜ ସରକାର କିଛି ଶୁଣିଲେ ନାହିଁ । ଫଳରେ ଯତୀନ୍ଦ୍ରନାଥ ମୁଖୋପାଧ୍ୟାୟ ଉତ୍ତେଜନା ଗ୍ରହଣ କରି ସେପ୍ଟେମ୍ବର ୯ ତାରିଖ ୧୯୧୫ ମସିହାରେ ଇଂରେଜମାନଙ୍କ ସହିତ ବାଲେଶ୍ୱରରେ (ଚଷାଖଣ୍ଡ) ଯୁଦ୍ଧ କଲେ ଏବଂ ନିହତ ହେଲେ । ଏଇମିତି ଅନେକ ରୋମାଞ୍ଚକର ଘଟଣା ସ୍ୱାଧୀନତା ଆନ୍ଦୋଳନକୁ କେନ୍ଦ୍ର କରି ଭାରତର ଚାରିଆଡ଼େ ସଂଘଟିତ ହୋଇଛି ।

ଖୁଦିରାମ 'ବନ୍ଦେ ମାତରମ୍'କୁ ଚାରିଆଡ଼େ ପ୍ରଚାର କଲେ ଏବଂ ଇଂରେଜ ଶାସନକୁ ସମାଲୋଚନା କଲେ । ବଙ୍ଗ ଭଙ୍ଗ ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମକୁ କେନ୍ଦ୍ର କରି ବହୁ ବଙ୍ଗାଳୀ ବିପ୍ଳବ କରୁଥିଲେ ଏବଂ ସେମାନଙ୍କର ବିଚାର ହେଉଥିଲା । ବିଚାର ଦେଖିବାକୁ ମଧ୍ୟ ଅନେକ ଲୋକ ଜମା ହେଉଥିଲେ । ଥରେ ଗୋରା ପୋଲିସ ବିନା କାରଣରେ ମଧ୍ୟ କେତେକ ନିର୍ଦ୍ଦୋଷ ଦର୍ଶକଙ୍କୁ ଲାଠି ପ୍ରହାର କଲା । ଏ ଦୃଶ୍ୟକୁ ସୁଶୀଲକୁମାର ସେନ୍ ନାମକ ଏକ ପନ୍ଦର ବର୍ଷର ଯୁବକ ସହ୍ୟ କରି ନପାରି ପୋଲିସ ଉପରକୁ ବାଘଭଳି ଝାମ୍ପି ପଡ଼ିଲା ଏବଂ ନାକ ଉପରକୁ ମୁଥାଏ ମାରିଲା । ତ୍ରୁପାକ୍ସ ହାତରୁ ଲାଠି ଛଡ଼ାଇ ପୋଲିସକୁ ମଧ୍ୟ ଭଲ ଭାବରେ

ମାରିଲା । ଫଳରେ ପୋଲିସ ଦେହରୁ ନାକରୁ ରକ୍ତ ବାହାରିଲା । ସଙ୍ଗେ ସଙ୍ଗେ ପୋଲିସ ସୁଶୀଲଙ୍କୁ ଗିରଫ କଲେ ଏବଂ କିଙ୍ଗସ ଫୋର୍ଡ଼ଙ୍କ ଆଦେଶ ଅନୁଯାୟୀ ସୁଶୀଲଙ୍କୁ ଲଙ୍ଗଳା କରି ପନ୍ଦର ଥର ବେତ୍ରାଘାତ ପ୍ରହାର ହେଲା ।

ଏ ଘଟଣାକୁ ଖୁଦିରାମ ବୋଷ ସହ୍ୟ କରିପାରିଲେ ନାହିଁ । ବିନା କାରଣରେ ଗୋରା ପୋଲିସ ନିର୍ଦ୍ଦୋଷ ଲୋକଙ୍କୁ ଲାଠିମାଡ଼ ଦେବାରୁ ସିନା ସୁଶୀଲ ପୋଲିସକୁ ମୁଥା ମାରିଲା । ଇଂରେଜମାନେ ଆମକୁ ଶାସନ କରୁଥିଲେ ବୋଲି କ୍ରୀତଦାସ ଠାରୁ ବଳି ହୀନମାନ କରୁଥିଲେ । ବର୍ତ୍ତମାନ ଖୁଦିରାମଙ୍କର ସମସ୍ତ ରାଗ କିଙ୍ଗସ୍ ଫୋର୍ଡ ମାଜିଷ୍ଟ୍ରେଟଙ୍କ ଉପରେ ଅଜାଡ଼ି ହୋଇ ପଡ଼ିଲା । ପ୍ରତିଜ୍ଞା କଲେ କିଙ୍ଗସ୍ ଫୋର୍ଡ଼ଙ୍କୁ ପ୍ରାଣରେ ମାରିବାକୁ । ବ୍ରିଟିସ ସରକାର କିନ୍ତୁ ଏ କଥା ଜାଣିପାରି କିଙ୍ଗସ୍ ଫୋର୍ଡ଼ଙ୍କୁ ମୁଜାଫରପୁରକୁ ବଦଳି କରିଦେଲେ ।

କଲିକତାରେ ବିପ୍ଲବୀମାନଙ୍କ ଆଲୋଚନା ପରେ କିଙ୍ଗସ୍ ଫୋର୍ଡ଼ଙ୍କୁ ହତ୍ୟା କରିବାର ଦାୟିତ୍ବ ଶେଷରେ ଖୁଦିରାମଙ୍କ ଉପରେ ପଡ଼ିଲା । ସେତେବେଳେ ଖୁଦିରାମଙ୍କର ବୟସ ୧୯ ବର୍ଷ । ଏତେ କମ୍ ବୟସରେ ଜଣେ ଯୁବକ ଦେଶପାଇଁ କେତେ ଦୁଃସାହସିକ କାର୍ଯ୍ୟ କରିବାକୁ ଯାଉଛନ୍ତି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ପ୍ରତିଶୋଧ ନେବା ହିଁ ଥିଲା ତାଙ୍କର ପ୍ରତିଜ୍ଞା । ସେ ଜାଣିଥିଲେ ଧରା ପଡ଼ିଲେ ଗୋରା ଶାସକ ତାଙ୍କୁ ନିଶ୍ଚୟ ଫାଶୀ ଦେବେ, କିନ୍ତୁ ତଥାପି ସେ ଜୀବନକୁ ଭ୍ରୂକ୍ଷେପ କଲେ ନାହିଁ । ଖୁଦିରାମ ଏବଂ ପ୍ରଫୁଲ୍ଲକୁମାର ଚାକି କିଙ୍ଗସ୍ ଫୋର୍ଡ଼ଙ୍କୁ ହତ୍ୟା କରିବାକୁ କଲିକତାରୁ ମୁଜାଫରପୁର ଗଲେ । ହାତରେ ତାଙ୍କର ପିସ୍ତଲ ଏବଂ ବୋମା । ସେମାନେ

କିଙ୍ଗସ ଫୋର୍ଡଙ୍କ ବଙ୍ଗଳା ପାଖରେ ଲୁଚି ରହିଲେ । ସେ ଦିନ ଥାଏ ଏପ୍ରିଲ ୩୦ ତାରିଖ, ୧୯୦୮ ମସିହା ସେତେବେଳେ ଦେଖିଲେ ବଙ୍ଗଳାରୁ ଏକ ଘୋଡ଼ାଗାଡ଼ି ବାହାରକୁ ଆସୁଛି, ଖୁଦିରାମ ହଠାତ୍ ଗାଡିକୁ ଲକ୍ଷ୍ୟ କରି ବୋମା ଫିଙ୍ଗିଲେ । ପ୍ରଚଣ୍ଡ ଶବ୍ଦ ହେଲା—ଧୂଆଁରେ ଗୃହଆଡ଼ ଭର୍ତ୍ତି ହୋଇଗଲା, କିନ୍ତୁ ଦୁଃଖର କଥା, କିଙ୍ଗସ୍ ଫୋର୍ଡ ନ ମରି ତାଙ୍କର ଜଣେ ବନ୍ଧୁ କେନେଡ଼ି, ତାଙ୍କର ସ୍ତ୍ରୀ, ଝିଅ ଏବଂ ଗୃହରେ ମୃତ୍ୟୁ ହେଲା । କିଙ୍ଗସ୍ ଫୋର୍ଡ ବଙ୍ଗଳାରେ ଥିଲେ । ଖୁଦିରାମ ଲୋକ ନଦେଖି ଗାଡ଼ିକୁ ହିଁ ବୋମା ଫିଙ୍ଗିଥିଲେ ।

ବୋମା ଫିଙ୍ଗିସାରିବା ପରେ "କଏ ମଲା"କୁ ଅପେକ୍ଷା ନକରି ଖୁଦିରାମ ତୀବ୍ର ବେଗରେ ଦୌଡ଼ିବାକୁ ଆରମ୍ଭ କଲେ ଏବଂ ରାତିସାରା ରେଳଲାଇନ୍ କଡ଼ରେ ଧାଇଁ ଧାଇଁ ୨୫ ମାଇଲ ରାସ୍ତା ଅତିକ୍ରମ କଲେ । ଶେଷରେ ରେଳ ଷ୍ଟେସନବର୍ତ୍ତୀ ଏକ ଜଳଖିଆ ଦୋକାନରେ ପହଞ୍ଚିଲେ । ସେତେବେଳକୁ ସକାଳ ହୋଇ ଯାଇଥାଏ । ଏହା ମଧ୍ୟରେ କେନେଡ଼ିଙ୍କ ହତ୍ୟା ଘଟଣା ଚାରିଆଡ଼େ ପ୍ରଚାର ହୋଇ ଯାଇଥାଏ ଏବଂ ଦୋକାନରେ ଏ କଥା ଆଲୋଚନା ହେଉଥିବାର ଖୁଦିରାମ ଶୁଣିଲେ । ଖୁଦିରାମ ଅତିଶୟ କ୍ଲାନ୍ତ ଜଣା ପଡୁଥାନ୍ତି । ପେଟରେ କିଛି ନାହିଁ, ପ୍ରଚଣ୍ଡ ଶୋଷ; ରୁକ୍ଷ ଚେହେରା । କୌତୁହଳବଶତଃ ନିଜର ପରିବେଶକୁ ନ ବୁଝି ହଠାତ୍ କହିପକାଇଲେ, "କ'ଣ କିଙ୍ଗସ ଫୋର୍ଡ଼ ମରି ନାହାନ୍ତି ।" ଏତିକ ପ୍ରଶ୍ନ ସେଠାରେ ଥିବା ଲୋକଙ୍କ ମନରେ ସନ୍ଦେହ ସୃଷ୍ଟି କଲା ଏବଂ ଖୁଦିରାମ କ୍ଲାନ୍ତ ଓ ଅପରିଚିତ ଥିବାରୁ ହୋଟେଲବାଲା ସନ୍ଦେହ କରି ରେଳ ପୁଲିସକୁ ଖବର ଦେଲା । ଖବର ପାଇ ରେଳ ପୁଲିସ ପହଞ୍ଚିଗଲେ । ଖୁଦିରାମ ପାଣି ପିଇବାକୁ

ମୁହିଁ ପାଖକୁ ଗ୍ଲାସ ଉଠାଇଥିବାବେଳେ କାହାର କୋଠା ଆଖିତରେ ଅପ୍ରସ୍ତୁତ ହୋଇ ପଡ଼ିଲେ । ହାତରୁ ଗ୍ଲାସ ଖସି ପଡ଼ିଲା । ପାଣି ମଧ୍ୟ ପିଇପାରିଲେ ନାହିଁ । ପୁଲିସ ଗିରଫ କଲା । ନିଜର ପିସ୍ତଲ ମଧ୍ୟ ପକେଟରୁ ବାହାର କରିପାରିଲେ ନାହିଁ । କଲିକତାରେ ତାଙ୍କର ବିଚାର ହେଲା । କିନ୍ତୁ ସେ ବିଚାର ଥିଲା ଏକ ପ୍ରହସନ । ଗୋରାଜଜ ଖୁଦିରାମଙ୍କୁ ମୃତ୍ୟୁଦଣ୍ଡ ଦେଲା । ହାଇକୋର୍ଟକୁ ଅପିଲ ହେଲେ ମଧ୍ୟ ତାହା ଖାରଜ ହେଲା । ଅଗଷ୍ଟ ୧୯ ତାରିଖ ୧୯୦୮ ମସିହାରେ ଖୁଦିରାମଙ୍କୁ ଫାଶୀ ଦିଆଗଲା । ସେତେବେଳେ ହାତରେ ଥିଲା ତାଙ୍କର ଭଗବତ୍ ଗୀତା ଏବଂ ଓଠରେ ଥିଲା 'ବନ୍ଦେ ମାତରମ୍' । ସେ ହସି ହସି ମୃତ୍ୟୁ ବରଣ କରି ଭାରତମାତାର ମୁଖୋଜ୍ଜ୍ୱଳ କଲେ ।

ଜୟହିନ୍ଦ୍ !



## ଆଦିବାସୀ ଶହୀଦ ଲକ୍ଷ୍ମଣ ନାଏକ

ମହାତ୍ମା ଗାନ୍ଧୀଙ୍କ ଡାକରା ଯେତେବେଳେ ଭାରତର ସବୁ କୋଣରୁ ପ୍ରତିଧ୍ୱନିତ ହେଲା, ଆମ ଓଡ଼ିଶାର ବଣପାହାଡ଼ ଘେରା କୋରାପୁଟ ଜିଲ୍ଲାର ଆଦିବାସୀ ପଲ୍ଲୀ ତେନ୍ତୁଲିଗୁମ୍ମାରୁ ହୁଙ୍କାର ଦେଲେ ଲକ୍ଷ୍ମଣ ନାଏକ । ଓଡ଼ିଶାର ଆବାଳ-ବୃଦ୍ଧବନିତାଙ୍କ କଣ୍ଠରୁ ଆଜି ବି ଶୁଣାଯାଏ—

ଲକ୍ଷଣ ନାଏକ ରେ ଲକ୍ଷ୍ମଣ ନାଏକ—<br>
ଦେଶ ପାଇଁ ଫାଶୀଖୁଣ୍ଟେ<br>
ଝୁଲିଗଲୁ କେଳକ ରେ—<br>
ଲକ୍ଷଣ ନାଏକ । ୦ ।

ଲକ୍ଷ୍ମଣ ନାଏକ ନାମଟି ଆଜି କେବଳ କୋରାପୁଟର ଆଦିବାସୀମାନଙ୍କ ହୃଦୟରେ ନୁହେଁ ; ସମଗ୍ର ଭାରତର ଜନତାଙ୍କ ହୃଦୟରେ ଲିପିବଦ୍ଧ ହୋଇ ରହି ଯାଇଛି । ଯୁଗ ଯୁଗ ପାଇଁ ମଧ୍ୟ ରହିଥିବ ।

"ପଥର ଉପରୁ ଘାସ ମୂଣ୍ଡ ଟେକିବା ପରି ମଣିଷର ସ୍ୱତନ୍ତ୍ର କୌଣସି ବାଧା ବନ୍ଧନକୁ ମାନେ ନାହିଁ।" ଆଦିବାସୀ ଭୂମିଆଁ ପରିବାରରେ ପ୍ରଥମ ପୁତ୍ର ହୋଇ ୧୮୯୯ ନଭେମ୍ବର ମାସ ୨୨ ତାରିଖରେ ଜନ୍ମଗ୍ରହଣ କରିଥିଲେ ।

ପିଲବେଳୁ ଲକ୍ଷ୍ମଣ ଥିଲେ ସ୍ୱାଧୀନଚେତା । ତାଙ୍କର ବ୍ୟକ୍ତିତ୍ୱ ଓ ସୁଗୁଣଗୁଡ଼ିକ ପାଇଁ ଅଳ୍ପଦିନ ମଧ୍ୟରେ ସେ କୋରାପୁଟର ଆଦିବାସୀ ଅଞ୍ଚଳରେ ନେତା ଭାବେ ପରିଚିତ ହୋଇଥିଲେ । ଲକ୍ଷ୍ମଣ ଯାହା କହୁଥିଲେ—ସବୁ ଆଦିବାସୀଙ୍କର ସେଥିରେ ସମ୍ମତି ଥିଲା ।

ଆନ୍ଧ୍ରପ୍ରଦେଶର ବଶିଷ୍ଟ ସଂଗ୍ରାମୀ ସୀତାରାମ ରାଜୁଙ୍କର ମେଳି ଫଳରେ ବଣ ଜଙ୍ଗଲ ଘେରା କୋରାପୁଟରେ ଏହାର ପ୍ରଭାବ ପଡ଼ୁଥାଏ, ସେ ଏହି ମେଳରେ ଯୋଗ ଦେବାକୁ ଇଚ୍ଛୁକ ଥାନ୍ତି । ଏଥିପାଇଁ ହୁଏତ ସଶସ୍ତ୍ର ବିପ୍ଳବ ଦରକାର ହୋଇପାରେ, ତେଣୁ ସେ ବନ୍ଧୁକ ଚାଳନା ଶିକ୍ଷା କଲେ । ଆଦିବାସୀ ଅଞ୍ଚଳରେ ଡାକ୍ତରୀ ଚିକିତ୍ସାର ସୁବିଧା ନଥାଏ, ତେଣୁ ସେ ଚାହିଁଲେ ବୈଦ୍ୟଗିରି, ଝାଡ଼ଣ, ଫୁଙ୍କାଣ, ଚେରମୂଳରେ ଚିକିତ୍ସା କରି କପରି ଲୋକ-ମାନଙ୍କର ସେବା କରିବାକୁ ହେବ, ସେଥିରେ ଲାଗି ପଡ଼ିଲେ ।

ଗୁଣି ଗାରେଡ଼ି ଓ ଔଷଧପତ୍ର ବିଦ୍ୟାରେ ପାରଦର୍ଶିତା ଅର୍ଜନ କରି ଆହୁରି ଲୋକପ୍ରିୟ ହୋଇଗଲେ ।

ଗାଆଁର ନାୟକ ତାଙ୍କର ବାପା । ସେ ବାପାଙ୍କ ସହ ଜୟପୁର ରଜାଙ୍କ ଘରକୁ, ରାମଗିରିର ଅମିନ ଅଫିସକୁ ଓ ମାଲ୍‌କାନଗିରି କୁ

ନାନା କାର୍ଯ୍ୟରେ ଆସନ୍ତି । ଏହିପରି ଯିବା ଆସିବା ଫଳରେ ସେ ସହଜରେ ଓଡ଼ିଆ ଭାଷା ଶିଖିଗଲେ ।

୧୯୩୬ മସିହାର କଥା । ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟ ଗଠିତ ହେଲା । ଓଡ଼ିଶାର ଲାଟ୍ ହେଲେ – ସାର୍ ଜନ୍ ହବାକ୍ । ଅଳ୍ପଦିନ ଭିତରେ ସେ କୋରାପୁଟ ଗସ୍ତରେ ଆସିଲେ । ପଟୁଆର, ଶିକାର ପ୍ରସ୍ତୁତ ହେଲା—ଏଣେ କାହାର ପୁଷ ମାସ ତ ଆଦିବାସୀଙ୍କର ସର୍ବନାଶ ହେଲା ।

ଲାଟଙ୍କୁ ଖୁସି କରାଇବା ପାଇଁ ସ୍ଥାନୀୟ କର୍ମଚାରୀମାନେ ଆଦିବାସୀଙ୍କ ଉପରେ ଯାହା ଜୋର୍ ଜବରଦସ୍ତି ଅତ୍ୟାଚାର କରିବା ସମ୍ଭବ, ମନଇଚ୍ଛା ହରିଲୁଟ୍ କରିଗଲେ । ଲକ୍ଷ୍ମଣ ବିବ୍ରତ ହୋଇ ପଡ଼ିଲେ ।

ଲକ୍ଷ୍ମଣଙ୍କ ଚେଷ୍ଟାରେ ସମାଜରେ ଆଦିବାସୀଙ୍କ କରୁଣ କାହାଣୀ ପ୍ରକାଶ ହେଲା । ତଦନ୍ତ ପରେ ଏହା ସତ୍ୟ ପ୍ରମାଣିତ ହେବାରୁ ସମସ୍ତଙ୍କୁ କ୍ଷତିପୂରଣ ମିଳିଲା ।

ଲକ୍ଷ୍ମଣଙ୍କର ଜୀବନରେ ଏକ ବିରାଟ ଜୟ ହେଲା ।

ଦିନକୁ ଦିନ ଲକ୍ଷ୍ମଣ ଯେତେ ଲୋକପ୍ରିୟ ହେଉଥାନ୍ତି, ସେ ମନପ୍ରାଣ ଦେଇ ଲୋକଙ୍କ ସେବାରେ ସେତେ ଲାଗୁଥାଆନ୍ତି । ତା' ସଙ୍ଗେ ସଙ୍ଗେ କଂଗ୍ରେସର ବାଣୀ ପ୍ରଚାର, ସ୍ୱାଧୀନତା, ଏକତା ଇତ୍ୟାଦିର ଅର୍ଥକୁ ଜନସାଧାରଣଙ୍କ ଆଗରେ ବୁଝାଉଥାନ୍ତି ।

୧୯୩୯ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ । ଭାରତରେ ସ୍ୱାଧୀନତା ସଂଗ୍ରାମୀମାନେ ଚାରିଆଡ଼େ ସତ୍ୟାଗ୍ରହ କରୁଥାନ୍ତି । ମାଥିଲିରେ ସତ୍ୟାଗ୍ରହ କରି ଲକ୍ଷ୍ମଣ ଜେଲ ବରଣ କଲେ ।

୧୯୪୨ ଅଗଷ୍ଟ ୨୧ ତାରିଖରେ 'କର ବା ମର' ମନ୍ତ୍ର ଏବଂ ଗାନ୍ଧିଜୀଙ୍କୁ ମୁକ୍ତ କରିବା ପାଇଁ ଚାରିଆଡ଼େ ପଟୁଆର ବାହାରିଥାଏ । ଲକ୍ଷ୍ମଣ ଗାଁକୁ ଗାଁ ବୁଲି ସଂଗ୍ରାମୀମାନଙ୍କୁ ଧରି ମାଥିଲି ହାଟରେ ପହଞ୍ଚିଲେ । ଅପୂର୍ବ ସେ ଦୃଶ୍ୟ । ତ୍ରିରଙ୍ଗା ପତାକାର ବନ୍ୟା । ଲକ୍ଷ୍ମଣ ଭାଷଣ ଦେଲେ । ସେ ଥିଲେ ପ୍ରକୃତ ନେତା । ଲକ୍ଷ୍ମଣ ସମସ୍ତ କର୍ମୀଙ୍କୁ ଡାହାଣ ପାଦ ଆଗକୁ ବଢ଼ାଇବାକୁ କହି ବୁଝାଇଦେଲେ, ଏ ପାଦ ଆଉ ପଛକୁ ଫେରିବ ନାହିଁ । ଏହା ଅମର ଶପଥ ।

ତା ପରେ ପଟୁଆର ଚାଲିଲା ମାଥିଲି ଥାନା ଆଗକୁ । ଏହାର ମୁକାବିଲା କରିବା ପାଇଁ ପୂର୍ବରୁ ବହୁ ଲାଠି, ବନ୍ଧୁକ, ଗୁଳିଗୁଳା ଧରି ପୁଲିସ ପ୍ରସ୍ତୁତ ଥାଆନ୍ତି ।

'ବନ୍ଦେ ମାତରମ୍' ଧ୍ୱନିରେ ଚତୁର୍ଦ୍ଦିଗ କମ୍ପି ଉଠିଲା । ବାଧା ନମାନି କର୍ମୀମାନେ ଥାନା ଉପରେ ତ୍ରିରଙ୍ଗା ପତାକା ଉଡ଼ାଇବା ପାଇଁ ମାଡ଼ି ଚାଲିଲେ । ପୁଲିସଙ୍କର ଲାଠି ମାଡ଼ ବି ଚାଲିଲା । ଲକ୍ଷ୍ମଣ ବାରମ୍ବାର ସାବଧାନ କରାଇ ଦେଉଥାନ୍ତି । ଆମେ ମାଡ଼ ଖାଇବା ପଛେ ହାତ ଉଠାଇବା ନାହିଁ । ଏତେ ବଡ଼ ପଟୁଆରିକୁ ସାମାନ୍ୟ କେତେ ଜଣ ପୁଲିସ ବା ଲାଠିରେ ସମ୍ଭାଳିବେ କେମିତି ?

ଥାନା ଅଫିସରଙ୍କ ଇଙ୍ଗିତରେ ନେତା ଲକ୍ଷ୍ମଣଙ୍କୁ ଥାନା ସାମନାକୁ ଟାଣିନେଇ ପୁଲିସ ଖୂବ୍ ପିଟିଲେ । ଦୁଇ ଜଣ୍ ମାଡ଼ ବସିଲେ । ଆଉ ଜଣେ ତାଙ୍କର ନଖକୁ ପୋଡ଼ିବାରେ ଲଗିଲା । ସେ ଯନ୍ତ୍ରଣାରେ ଛଟପଟ ହେଉଥାନ୍ତି ।

ଲକ୍ଷ୍ମଣଙ୍କୁ ମାଡ଼ ଦେଲେ ଜନତା ଛିନ୍ନଛତ୍ର ହେବେ ମନେ କରିଥିଲେ । ଫଳ ଓଲଟା ହେଲା, କର୍ମୀମାନେ ଉତ୍ତ୍ୟକ୍ତ ହୋଇ ଥାନା ଭିତରକୁ ପଶିଲେ । ଧସ୍ତାଧସ୍ତିରେ କେତେ ଜଣ କନେଷ୍ଟବଲ ଓ ପିଅନ ତଳେ ପଡ଼ିଗଲେ । ପୁଲିସର ଗୁଳିଚାଳନା ଆରମ୍ଭ ହୋଇଗଲା । ଟିମସ୍ ଗୁଡ଼ାଇ ଲିଙ୍ଗ ଭୂମିଆ ତିରଙ୍ଗା ପତାକା ଧରି ଗୃହ ଉପରକୁ ଚଢ଼ିଲେ । ପୁଲିସର ଗୁଳି ମାଡ଼ରେ ସେ ପତାକା ସହ ତଳେ ଗଡ଼ିଗଲେ । ନକୁଳ ମାଡ଼ି କାର୍ମୀଙ୍କର ମଧ୍ୟ ସମାନ ଅବସ୍ଥା ହେଲା । ଏହା ମଧ୍ୟରେ ଅଘାତ ପାଇ ଫରେଷ୍ଟ ଗାର୍ଡ଼ ଜି. ରାମାସ୍ୱାମୀ ପଡ଼ିଗଲା । କେତେକ କହନ୍ତି ଗୁଳି ବାଜିଗଲା ।

ପ୍ରବଳ ଗୁଳି ଚାଳନାରେ ନିରସ୍ତ୍ର ଜନତା ଛତ୍ରଭଙ୍ଗ ହେଲେ । ହାତ ନ ଉଠାଇ କେତେ ବୀର ପୁଙ୍ଗବ ଶହୀଦ ହୋଇଗଲେ ।

ଜଣେ ପୁଲିସ ବନ୍ଧୁକର ବଟ୍ଟନଟ୍‌ରେ ଲକ୍ଷ୍ମଣଙ୍କ ମୁହଁକୁ ଆଘାତ କରିବାରୁ ସେ ଚେତା ହରାଇଲେ । ମୃତ୍ୟୁ ଘଟିଛି, ମନେ କରି ଲକ୍ଷ୍ମଣଙ୍କୁ ନର୍ଦ୍ଦମାରେ ଫୋପାଡ଼ ଦେଲେ ।

ବର୍ଷା, ଅନ୍ଧାର ରାତିର ଶୀତଳ ପବନରେ ଲକ୍ଷ୍ମଣଙ୍କ ଚେତା ଫେରିଲା । ବହୁ କଷ୍ଟ ଯନ୍ତ୍ରଣାରେ ଲକ୍ଷ୍ମଣ ଉଠି ଗୁଳିଲେ ।

କେତେ ଚିନ୍ତା କେତେ ଭାବନା । ସେଇ ରାତିରେ ୩୫ ମାଇଲ ଦୂର ଜୟପୁର ଚାଲିଗଲେ । କର୍ମୀଙ୍କ ସେବାରେ ବଞ୍ଚିଗଲେ ।

ଏଣେ ଗାର୍ଡ଼ ସମାଦ୍ଦାର ମୃତ୍ୟୁ ଲାଠି ପ୍ରହାରରେ ହୋଇଛି ବୋଲି ପୁଲିସମାନେ ଡାକ୍ତର ସାର୍ଟିଫିକେଟ କରିଦେଲେ । ଶେଷରେ ଏହି ଲାଠି ପ୍ରହାର ନେତା ଲକ୍ଷ୍ମଣଙ୍କର ଥିଲା ବୋଲି ମିଥ୍ୟାରେ ପ୍ରମାଣ କରାଗଲା ।

ବିଚାର ହେଲା—ଲକ୍ଷ୍ମଣଙ୍କୁ ୧୯୪୩ ମାର୍ଚ୍ଚ ୨୯ ତାରିଖରେ ହତ୍ୟା ଅଭିଯୋଗରେ ଫାଶୀ ଦିଆଗଲା ।

ଜୟହିନ୍ଦ୍ !

## କୃତ୍ତିବାସ ନାୟକଙ୍କର ଆଉ କେତୋଟି ପୁସ୍ତକ

ଓଡ଼ିଶାର ସବୁଠାରୁ ଜନପ୍ରିୟ ଓଡ଼ିଆ
ସାଧାରଣଜ୍ଞାନ ପୁସ୍ତକ

# ଜ୍ଞାନ ସଂଗ୍ରହ

ଓଡ଼ିଶା ବିଷୟରେ ସବୁ ଜାଣିବାକୁ :

# ଉତ୍କଳ ଦର୍ପଣ

ପିଲାଙ୍କ ମନର ଅଡୁଆ ପ୍ରଶ୍ନର ସମାଧାନ କରିବ :

# ସର୍ବଜ୍ଞ ମାନବ

ବ୍ୟସ୍ତ ମନକୁ ହାଲୁକା କରି ନୂଆ ଉତ୍ସାହ ପାଇଁ :

# ବଢ଼ିଆ ମଜା

ଓଡ଼ିଶାର ଏକମାତ୍ର ଶିଶୁ ଓ କିଶୋର ଡାଇଜେଷ୍ଟ ପତ୍ରିକା :

# ଶିଶୁ ରାଇଜ

ଏଗୁଡ଼ିକ ଆପଣ ପାଉ ନଥିଲେ ଯୋଗାଯୋଗ କରନ୍ତୁ ।

ସମ୍ପାଦକ "ଶିଶୁ ରାଇଜ"
ଜଳସେଚନ କଲୋନୀ
ଜୟପୁର-୭୬୪୦୦୪ (କୋରାପୁଟ)



# ଲେଖକଙ୍କ ପରିଚୟ

କଟକ ଜିଲ୍ଲାର ରାଜକନକା ବ୍ଲକ୍‌ର ଏକତଲା ଗ୍ରାମରେ ଲେଖକ କୃତ୍ତିବାସ ନାୟକଙ୍କର ୧୯୫୭ରେ ଜନ୍ମ । ପିଲାବେଳୁ ଲେଖାଲେଖି କରନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଏମ୍. ଏ. କରିଛନ୍ତି । ବର୍ତ୍ତମାନ କୋରାପୁଟ ଜିଲ୍ଲାର ଅପର କୋଲାବ ଯୋଜନାରେ କର୍ମରତ । ଏଥିସହ ଶିଶୁରାଇଜ ପତ୍ରିକାର ସମ୍ପାଦନା କରନ୍ତି । ଓଡ଼ିଶାର ପ୍ରାୟ ସମସ୍ତ ସାହିତ୍ୟ ଅନୁଷ୍ଠାନ ଓ ସାଂସ୍କୃତିକ ଅନୁଷ୍ଠାନ ସହ ସମ୍ପୃକ୍ତ । ତାଙ୍କର ଶତାଧିକ ଗଳ୍ପ, କବିତା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ଆକାଶବାଣୀର ସେ ଜଣେ ଗୀତିକାର । ଆକାଶବାଣୀର ବିଭିନ୍ନ କାର୍ଯ୍ୟକ୍ରମରେ ମଧ୍ୟ ସେ ଅଂଶ ଗ୍ରହଣ କରନ୍ତି । ତାଙ୍କର କେତେଗୁଡ଼ିଏ ଉପାଦେୟ ପୁସ୍ତକ ପ୍ରକାଶ ପାଇ ଲୋକପ୍ରିୟତା ଅର୍ଜନ କରିଛି । ଶ୍ରୀ ନାୟକ ଜଣେ କଠିନ ପରିଶ୍ରମୀ ଓ କର୍ମଠ ବ୍ୟକ୍ତି ।

—ପ୍ରକାଶକ—